ପ୍ରକାଶକ :
ଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର
କଟକ-୨ : ବ୍ରହ୍ମପୁର-୧



ମୁଦ୍ରକ :
ଶ୍ରୀ ବ୍ରଜନାଥ ରଥ
ବିଶ୍ୱଶ୍ରୀ ପ୍ରେସ୍
ବାଲେଶ୍ୱର

ପ୍ରଥମ ମୁଦ୍ରଣ :
ଅଗଷ୍ଟ, ୧୯୮୧

ମୂଲ୍ୟ : ଟ ୧୨.୦୦
ସାଦା ବନ୍ଧେଇ : ଟ ୧୦.୦୦



ଓଡ଼ିଶାର ପୂର୍ବତନ ପୁଲିସ୍ ଆଇ. ଜି. ଏବଂ ଅଧୁନା ଜାତୀୟ ପୋଲିସ ଏକାଡ଼େମୀ (ହାଇଦ୍ରାବାଦ)ର ଡାଇରେକ୍ଟର ଶ୍ରୀଯୁକ୍ତ **ବଜନକୃଷ୍ଣ ରାୟ** ଆଇ. ପି. ଏସ୍.—

ସହୃଦୟେଷୁ !

ମାନବିକ-ଅଧିକାର,
ମୂକ-ଯାତନାରେ ଖୋଜୁଛି ତୁମକୁ ଅଭାଗୀ ଉତ୍କଳର ।
ଶାନ୍ତ ନିରୀହ ପ୍ରାଣ-ସମ୍ପଦ, ମଣିପୁର ନିରାପତ୍ତା,
ସ୍ୱାଧୀନଭାବରେ ଜୀଇ ରହିବାକୁ ଚାହେଁ ଯେଉଁ ପ୍ରାଣସତ୍ତା,
ଶିଶୁ, ନର-ନାରୀ, କିଶୋର-କିଶୋରୀ, ନିରୀହ ଯେ ନାଗରିକ,
ପ୍ରୌଢ଼, ବୃଦ୍ଧ, ଯୁବକ-ଯୁବତୀ ସ୍ୱାଧୀନତାପ୍ରେମୀ ଲୋକ,
ଲେଖକ ଶିଳ୍ପୀ କବି-କଳାକାର, ବିଦଳିତ ମଣିପୁର—
ତମେ ମନେପଡ଼, ପଡ଼ିବ ବନ୍ଧୁ, ଏ କବିର ଚିରକାଳ !

ତମର ହୃଦୟବିଦାରୀର ଯେଉଁ କ୍ଷଣିକ ଝଲକ ରେଖା,
ଯା'କୁ ଭେଟିଥିଲି କଳାମେଘ ତଳେ, ଯାହାଙ୍କ ରହିଛି ଲେଖା—
ଏ ମୋର ହୃତ୍‌ଧମନୀ ରୁଧିରେ, ମୋ ମନର ଶିରଚୂଡ଼େ,
ଯା'ସହିତ ମୋର ସତ୍ତା ଜଡ଼ିତ, ଝଞ୍ଜା ସମ ଯେ ଉଡ଼େ,
ଯେଉଁ ଝଞ୍ଜାର ଗର୍ବିତ ଢେଉ, ତରଙ୍ଗାୟିତ ଦୋଳା,
ପଶୁଙ୍କୁ ଯେ ଦଂଶନକରି ମଣିଷାକୁ ଦିଏ ମାଳା,
ସତ୍ୟକୁ କରେ ଅଳଂକୃତ ସେ ମାନବିକ-ଅଧିକାରେ
ଆଖିତଳେ ସୃଜି ଲୁହର ଦରିଆ ମାନବିକ-ବେଦନାରେ ।

ଏହାପରି ଜଣେ ବିଶାଳ ପୁରୁଷ ତମେତ ମଶାଲବାହୀ,
ଗତିକଲବେଳେ ରକ୍ତନଦୀର ବଂକିମ-ବାହୁ ଦେଇ,
ପ୍ରକୃତ ମୋର ବିନାଶ ପାଇଁକି ସବୁ ହତିଆର ଆଣି—
କରିଥିଲି ତୁଲ ବଜ୍ର-ବିଜୁଳି, ପ୍ରଳୟ-ମେଘର ପାଣି ।

ଝଡ଼ ଉଠିଥିଲା ଈଶାଣ ଆକାଶେ, ଆଦିମ ଅନ୍ଧକାର—
ବକ୍ଷ ବିଦାରି ଉଠୁଥିଲା ମୋର ସୁତୀବ୍ର ହାହାକାର ।
ଗୃହସ୍ଥ ମୋତେ ତଡ଼ିଥିଲା ଘରୁ, ପଥ କରିଥିଲା ମନା
ନିଗୁଳିବାକୁ ତା ନିଷ୍ପ୍ରାଣ-ବୁକେ, ସାପ ପରି ତୋଳି ଫଣା ।

ଉଦାର ଆକାଶ ଅନୁଦାର ହୋଇ ପେଷିଦେବାପାଇଁ ମୋତେ
ଧୀରେ, ଅତି ଧୀରେ ଆସୁଥିଲା ନଇଁ ସର୍ବନାଶର ରଥେ ।
ପବନର ପ୍ରତି ରନ୍ଧ୍ର ଭିତରୁ ବିଷ-ନିଃଶ୍ୱାସ ଆସି,
ଶୀର୍ଷ୍ଣତନୁର ପ୍ରାଣରସକୁ ମୋ ବସିଥିଲା ନେବ ଶୋଷି ।
ସାମାଜିକ ମହା ଷଡ଼ଯନ୍ତ୍ରର ପ୍ରଚଣ୍ଡ ଫୁତ୍କାରେ
ଆତ୍ମକେନ୍ଦ୍ରୀ-ସମାଜଟା ଭୟେ ଦେଖିଥିଲା ନୀରବରେ,
କାଏମୀ ସ୍ୱାର୍ଥ, ତାର ଉଡ଼ାଣିଆ ପଶୁର ଯେ ଉଲ୍ଲାସ
ମୋ ସାଥିରେ ସେବେ ସ୍ୱପ୍ନେଟି ଜୀବନ ହୋଇଯାଉଥିଲା ଶେଷ ।
ସେ ସ୍ୱପ୍ନ ଜୀବନ ମୋର ଆତ୍ମୀୟ ଏହି ହେଲା ଅପରାଧ
ସ୍ଥିତାବସ୍ଥାର ଯେଣୁ ମୁଁ ବିରୋଧୀ, ମୋତେ ମାର ପ୍ରତିଶୋଧ ।
ଏ ମୋର କଲମ, ଏ ମୋର କଣ୍ଠ ଚିରକାଳ ପାଇଁ ସ୍ତବ୍ଧ—
ହେବ ଯେଉଁପରି ତାର ବ୍ୟବସ୍ଥା ହୋଇଥିଲା ନିଃଶବ୍ଦ ।
ଦିବାଲୋକେ ମୋର ଘରଣୀ ସେଦିନ ହୋଇଥିଲା ଘରୁ ଟଣା
ସାମାଜିକତାର କୁରୁସଭା ତଳେ ହୋଇଥିଲା ବିବସନା ।
ନୀରବରେ ସେଥିକୁ ଦେଖୁଥିଲେ ବସି ଧର୍ମରାଜର ଦଳ
ବୁଢ଼ ଅସୂୟା ଶାସନ କଳକୁ କରିଥିଲା ସେବେ ନୀଳ ।
ସମାଜ, ଶାସନ, ଆଇନ-କାନୁନ, ନେତା ଓ ନେତ୍ରୀମାନେ
କବି-କଳାକାର, ଲେଖକ-ଲେଖିକା ସଚେତନ ଜନଗଣେ,
ଗାନ୍ଧୀପୂଜକ ଭୂଦାନମାର୍ଗୀ, ସାମ୍ବାଦିକର ଦଳ,
ଶଠ-ବିପ୍ଳବୀ ବାମପନ୍ଥୀ ଯେ ରାଜନୈତିକ ଦଳ—
ଥିଲେ ତ ନୀରବ ଖବରକାଗଜ, ସତ୍ୟକୁ ଦେଇ ଚାପି
ମହା ଆନନ୍ଦର ବୃନ୍ଦାବନରେ ଯେଉଁମାନେ ରାଧା, ଗୋପୀ ।

ଜୀଇ ରହିବାର ସାମାନ୍ୟତମ କ୍ଷୀଣ ଯେ ସମ୍ଭାବନା—
ନାହିଁଥିଲା ବେଳେ, ହଠାତ ଶୁଣିଲି ଆଶ୍ୱାସନାର ବୀଣା—
ଝଙ୍କାର, ଆସି କାନେ ମୋ କହିଲା, "ନାହିଁ ଭୟ, ନାହିଁ ଭୟ,
ତୋହରି ଲୋତକ, ରୁଧିର ବିନ୍ଦୁ ଘଟାଇବ ପରାଜୟ—
ଦୁର୍ମତି ଏହି ଦୁଃଶାସନର, ଷଡ଼ଯନ୍ତ୍ରର ଘାଟି—
ସନ୍ଧାନ ମୋତେ ମିଳିଛି ପାନ୍ଥ ! ଅନ୍ଧାର ଯିବ ହଟି ।"

ତା'ପରେ ଦେଖିଲି ବଳିଷ୍ଠ ଭୁଜ ଏକ
ନରାପତ୍ତିର କଠୋର-କୁଠାର ତଳର୍ଓ୍ୱାରେ ଝକମକ—

ହୋଇ ଉଠି ସୁରୁ କଲ ଅଭିଯାନ, ନାଗରିକ-ଅଧିକାର—
ସୁରକ୍ଷା ଲାଗି ଯଦର୍ତ୍ତ ସେବନ; ତାହା ନୁହେଁ ଏକା ମୋର ।
ଅସହାୟ ପ୍ରାଣ ସମ୍ପଦ ପାଇଁ ସେ ଏକ ମୂଲ୍ୟବୋଧ—
ସୃଜିଲ ମାରବେ କର୍ମ ମଞ୍ଚେ, ହେବନ ଯା ପରିଶୋଧ ।

ଏହାର ମହାନ ଶିଳ୍ପୀ ହେ ତମେ ସୁମହାନ୍ କାରିଗର,
ମୋ ବଜନ ପଥେ ତମେ ତ 'ବଜନ', ତମ 'ଗ୍ରସ୍ଥ' ବାରବାର,
ଜ୍ଞାନୀ, ଗୁଣୀ ସେତେ ଶଠ-ମହାଜନ ସବୁକୁ ବାମନ କରି
ତମରି ସେ ଭବମୂର୍ତ୍ତି ଉଠିଛି ଆକାଶର ବୁକୁ ଚିରି ।
ମହାକାବ୍ୟର ଉପାଦାନ ହୋଇ ରହିଗଲା ପରେ ମୋର
ତମରି ସିଂହାସନରୁ ତମକୁ ହଟାଇଲା ପଶୁବଳ ।
ସେ ନଜେ ହଟିଛି ଆଜ ଦେଖ ଆସି, ଉନ୍ନତ ଶିର ତମେ,
ତମରି ହୃଦୟସ୍ପନ୍ଦ, ମଣିଷପଣିଆର ମହାନାମେ,
ନାଗରିକ-ଅଧିକାର, ମାନବିକ-ସ୍ୱାଧୀନତା ନୂଏଁ ମଥା
'ବଜନେ' ସୁମରେ କୋଟି ଦ୍ରୌପଦୀ 'କୃଷ୍ଣ' ତମରି କଥା ।

ଚିରବିଦ୍ରୋହୀ ଏ ମୋର କଲମ ତମ ଦେବା ଋଣ ଭାରେ
ବନ୍ଦନ ହୁଏ ଖ୍ରିଷ୍ଟାନ୍ତ ସାଧନାର ବେଦୀ ପରେ ।
ଚନ୍ଦ୍ରାଚୂଡ଼ା ଏ ମୋର କବିତା ଏ ମୋର ଅଗ୍ନିବେଦ,
ନିବେଦନ କରେ ତମରି ବେଦରେ, କିବା ଅଛି ସମ୍ପଦ ?

। ଇତି ।

କଟକ-୧୦ ବିନୀତ

ତା ୨୫ । ୧୧ । ୧୯୮୦ ରବି ସିଂ

ସ୍ୱାଧ ୧୧୫।

# ॥ ରବି ସିଂର ଭୂମିକା ॥

୧୯୭୮-୧୯୮୧ ଏହି ଚାରିବର୍ଷ ମଧ୍ୟରେ ମୋ ଦ୍ୱାରା ରଚିତ ଏବଂ ପ୍ରକାଶିତ-ଅପ୍ରକାଶିତ କେତୋଟି ସ୍ୱନିର୍ବାଚିତ କବିତାର ସଂକଳିତ ରୂପ ହେଉଛି ଏହି 'ଅଗ୍ନିବେଦ'।

ଯେଉଁ ଅଗ୍ନିଗର୍ଭା ଚାରୋଟି ବର୍ଷ ଏଥିର କବିତା ଗୁଡ଼ିକର ଅନ୍ତୁଡ଼ିଶାଳ ଏବଂ ଉତ୍ସଭୂମି ତାହା କେବଳ ମୋ ପକ୍ଷରେ ନୁହେଁ, ଯେକୌଣସି ଶାନ୍ତିପ୍ରିୟ, ସ୍ୱାଧୀନଚେତା ତଥା ସଚେତନ ମଣିଷ ପକ୍ଷରେ ଲୋମହର୍ଷକ, ଅଚିନ୍ତନୀୟ ଏବଂ କଳ୍ପନାର ଅତୀତ। ଏହି ବିଗତ ଚାରୋଟି ବର୍ଷ ମଧ୍ୟରେ ମୋର ଆତ୍ମା ତିନିଥର ଅକାଳ ମୃତ୍ୟୁକୁ ଭେଟିଛି, ଦୁଇଥର ମୁଁ ସପରିବାର ଗୃହହରା ହୋଇ ଶୀତକାକରରେ ପଥପ୍ରାନ୍ତରେ ଆଶ୍ରୟ ନେଇଛି, ମୋର ପୁତ୍ରକନ୍ୟାମାନେ ଗୋଟିଏ ଶିକ୍ଷାବର୍ଷ ହରାଇଛନ୍ତି, ମୋର ସ୍ତ୍ରୀଙ୍କର ସତୀତ୍ୱ ଦୁଇଥର ଭେଟିଛି ଜାନ୍ତବ ଏକ ଉଲଙ୍ଗ ପାଶବିକତାକୁ।

ପାଠକେ କହିପାରନ୍ତି, ଗୋଟାଏ କବିତା ବହିରେ 'ଭୂମିକା' ଲେଖିବାକୁ ଯାଇ ବ୍ୟକ୍ତିଗତ ଅଭାବ-ଅସୁବିଧା, ଦୁଃଖ-କଷ୍ଟ ସମ୍ପର୍କରେ ଦୀର୍ଘ ଅବତାରଣା ଅପ୍ରାସଙ୍ଗିକ। ମୁଁ ସେଥିରେ ନମ୍ରତାର ସହିତ ଏକମତ ହେଲେବି କହିରଖେ, ଉପରେ ଯେଉଁ ସୂଚନା ଦେଇଛି ଏବଂ ନିମ୍ନରେ ଯାହା ଉଲ୍ଲେଖ କରିବାକୁ ଯାଉଛି, ତାହା କେବଳ ମୋ ଉପରେ ନୁହେଁ ସମଗ୍ର କଳାକୃଷ୍ଟି, ଶିଳ୍ପ ସାହିତ୍ୟ, ସ୍ୱାଧୀନମନ ଏବଂ ଚୈତନ୍ୟ ତଥା ମଣିଷର ନାଗରିକ-ସ୍ୱାଧୀନତା ବିରୁଦ୍ଧରେ ଏକ ଫାସିଷ୍ଟ ଆକ୍ରମଣ ଏବଂ ସାମାଜିକଷଡ଼ଯନ୍ତ୍ର। ଏହାର ହେତୁ ତାହେଲେ କ'ଣ ? ଏହା କ'ଣ ଆକସ୍ମିକ ? ଏ ସବୁର ହେତୁ ହେଲା, ଚଉଠ ଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଧରି ଆଧୁନିକ ଓଡ଼ିଆ ସାହିତ୍ୟସଂସ୍କୃତି ପୀଠରେ ମୋର ସାଧନା-ସଂଗ୍ରାମ, ସିଦ୍ଧି ଓ ଜୟଯାତ୍ରା ସହିତ ମୋର ନିର୍ଭୀକତା, ସ୍ପଷ୍ଟବାଦିତା, ସାମ୍ବାଦିକ ଲେଖା, ଭାଷଣ, ନୂତନ ବିପ୍ଳବୀ ମୂଲ୍ୟବୋଧର ପ୍ରତିଷ୍ଠାପାଇଁ ବେସାଲିସୀ ସଂଗ୍ରାମ। ମୋ ଜୀବନ ଓ କାବ୍ୟପୁରୁଷ ଉପରେ ଏହି ସବୁ ଅକଥନୀୟ ଅତ୍ୟାଚାର ପୁଣି ମୋଟେ ଆକସ୍ମିକ ନୁହେଁ—ବରଂ ତାହା ସୁପରିକଳ୍ପିତ, ଯୋଜନାବଦ୍ଧ, ଉଦ୍ଦେଶ୍ୟମୂଳକ।

କହିବା ବାହୁଲ୍ୟ ଯେ, ମୋର ଏ ସମାଜରେ କେବେ କେହି ବ୍ୟକ୍ତିଗତ ଶତ୍ରୁ ନଥିଲେ—ଆଜି ମଧ୍ୟ ନାହାନ୍ତି ଏହି କାରଣରୁ, ମୋର କାଏମୀ ସ୍ୱାର୍ଥ ବୋଲି କିଛି ନାହିଁ। କିନ୍ତୁ ମୋର ପହିଲିନମ୍ବର ଦୁସ୍‌ମନ୍ ହେଉଛି ପ୍ରଚଳିତ ସାମାଜିକବ୍ୟବସ୍ଥା, ଅମଲାତାନ୍ତ୍ରିକ

ପୁଞ୍ଜିବାଦ ଏବଂ ମାନସିକ-ସାମନ୍ତବାଦ । ଏହାର ଦୁର୍ଗ-ତୋରଣ ଉପରେ ମୋ ଲେଖମାର ନିର୍ମମ ବୌଦ୍ଧିକ ଆଘାତ ସମାଜପତି, ପ୍ରତିକ୍ରିୟାବାଦୀ ନ୍ୟସ୍ତସ୍ୱାର୍ଥ ଚକ୍ର, ଭଣ୍ଡ-ବିପ୍ଳବୀ, ଶଠ-ବାମପନ୍ଥୀ, ଦଲାଲ-ସାମ୍ବାଦିକତା, ପରଶେଷରେ ଶାସକଗୋଷ୍ଠୀ ସମୂହଙ୍କୁ ବ୍ୟସ୍ତବିବ୍ରତ କରିଛି କେବଳ ନୁହେଁ—ନାନା ସମୟରେ ମୋ ଅସ୍ତିତ୍ୱ ବିରୁଦ୍ଧରେ ସେମାନେ ପାଗଳପର ବିରକ୍ତ ହୋଇ ଉଠି ୧୯୬୭ ସାଲଠାରୁ ଏଯାବତ୍ ସେମାନେ ଓ ସେମାନଙ୍କ ଭଡ଼ାଟିଆ ଚକ୍ର ମୋ ଉପରେ ଖଣ୍ଡ ଖଣ୍ଡ ଆକ୍ରମଣ ଚଳାଇ ଆସିଛନ୍ତି । ହେଲେ ବି ଅପଦସ୍ଥ ହେବା, ବାରମ୍ବାର ପରାଜୟ ବରଣ କରି ଉଚ୍ଛନ୍ନ ହେବା ଯେଉଁଠି ସେମାନଙ୍କ ପକ୍ଷରେ ବିଜ୍ଞାନସମ୍ମତ, ସେଠି ମୋର ବା କ'ଣ କରିବାର ଅଛି ? କାରଣ, ବିପ୍ଳବ ଶାସ୍ତ୍ରର ବିଧାନ ମୁତାବକ ସେମାନଙ୍କର ଶ୍ରେଣୀଚରିତ୍ର ହେଲା, "Make trouble, fail, make trouble again, fail again···till their doom."

ଅପର କ୍ଷେତ୍ରରେ ମୋ ଧର୍ମୀ ମଣିଷର ଶ୍ରେଣୀଚରିତ୍ର ହେଲା, "Fight, fail, fight again, fail again, fight again······till their victory." (୧)

ଏହି ବୈଜ୍ଞାନିକ-ସତ୍ୟ ମୋତେ ଏପର୍ଯ୍ୟନ୍ତ ଉଗ୍ରଭାବେ ବଞ୍ଚାଇ ରଖିଛି—ବିଜୟପରେ ବିଜୟ, ସାଫଲ୍ୟର ଅଧିକାରୀ କରିଛି । ଏଥିଲାଗି ଅପରପକ୍ଷ ଶିବିରରେ ଦେଖାଦେଇଛି ଚରମ ହତାଶା । ତାର ଫଳଶ୍ରୁତି ହେଲା ୧୯୬୭ ସାଲରୁ ପ୍ରତିଟି ସରକାରର ମୁଁ 'କୋଠଶିଆ' ହେବା । ମୋର ନୈତିକ ବଳକୁ ଭାଙ୍ଗିଦେବା ପାଇଁ, ମୋର କଲମ ଓ କାବ୍ୟପୁରୁଷକୁ ପଦାନତ କରି ବନ୍ଧକ ରଖିବା ପାଇଁ ନାନା ସମୟରେ ନାନା ପ୍ରଲୋଭନ, ଧମକଚମକ, ଭୀତି ପ୍ରଦର୍ଶନ, କ୍ରମବର୍ଦ୍ଧମାନ ରାଜରୋଷ, ବାରମ୍ବାର ଦୈହିକ ଆକ୍ରମଣ, ମୋ ନାମରେ ଓ ମୋ ସ୍ତ୍ରୀଙ୍କ ନାମରେ ମାଲମାଲ ମିଥ୍ୟା ମକଦ୍ଦମା ରୁଜୁ, ଘନଘନ ମୋର ବାସଗୃହ ଖାନତଲାସ୍, ମୋତେ ଭାରତରକ୍ଷା ଆଇନ, ଆଭ୍ୟନ୍ତରୀଣ ନିରାପତ୍ତାରକ୍ଷା ଆଇନରେ କାରାରୁଦ୍ଧ କରି ରଖିବା ଏକ ନିତ୍ୟନୈମିତ୍ତିକ ଘଟଣା ହୋଇଆସିଥିଲା । ଅତୀତର ଏହି ସମସ୍ତ କୁତ୍ସିତ୍ୟଳଙ୍ଗୀ କର୍ମକାଣ୍ଡକୁ ମ୍ଳାନ କରିଦେଲା ୧୯୭୮ ମସିହାରେ ଜନତା ସରକାର ଅମଳର ଅତ୍ୟାଚାର । ଜୁଲାଇ ୨୧, ୨୨ତାରିଖରେ ପ୍ରକାଶ୍ୟ ଦିବାଲୋକରେ ମୋତେ ୨ଥର ହତ୍ୟାକରିବାପାଇଁ ଆକ୍ରମଣ କରିଥିଲେ କେତେକ ଭଡ଼ାଟିଆ ଗୁଣ୍ଡା ଶ୍ରେଣୀର ଲୋକ ଉଚ୍ଚପଦସ୍ଥ ପୁଲିସ ଅଫିସରଙ୍କ ସହାୟତାରେ । ଆପାଦମସ୍ତକ ରକ୍ତସ୍ନାତ ହେଲେ ମଧ୍ୟ ମୁଁ ଦୈବାତ୍ ବଞ୍ଚିଯାଇଥିଲି । ସେହି ୭୮ର ଅକ୍ଟୋବର ୩୧ ତାରିଖ ରାତିରେ ମୋ ବାସଗୃହ ଉପରେ ବୋମା ଆଦି ମାରଣାସ୍ତ୍ର ମାନ ଧରି ଆକ୍ରମଣ କରାଯାଇ ମୋର କ୍ଷୁଦ୍ର ଲାଇବ୍ରେରୀ,

(୧) ମାଓ-ସେତୁଂ ନିର୍ବାଚିତ ରଚନାବଳୀ : Vol. IV, P. 428.

ଆସବାବପତ୍ର, କବାଟ ଝରକା ଆଦିକୁ ଖାଲି ଛନ୍ନଛତ୍ର କେବଳ କରିଗଲା ନାହିଁ, ମୋ ସ୍ତ୍ରୀଙ୍କ ସତୀତ୍ୱ ଉପରେ ମୋ ପୁତ୍ରକନ୍ୟାଙ୍କ ସାମ୍ନାରେ ଦୁଃଶାସନର ଦଳ ଲୁଚପଡ଼ିବାକୁ ଉଦ୍ୟମ କରି ଦୈବାତ୍ ବ୍ୟର୍ଥହୋଇଥିଲେ ।

ଏ ଘଟଣାରେ ଦେଶର ଜାତୀୟସ୍ତର, ଜାତୀୟ ସମ୍ବାଦପତ୍ରମାନେ ସ୍ତମ୍ଭିତ ତଥା ହତବାକ୍ ହୋଇଥିଲେ ମଧ୍ୟ ଓଡ଼ିଶାର ସମ୍ବାଦପତ୍ର, କବି-ଲେଖକ-ବୁଦ୍ଧିଜୀବୀ, ଭଣ୍ଡ-ବିପ୍ଳବୀ, ଭୂଦାନମାର୍ଗୀମାନେ ଧର୍ମଗ୍ରନ୍ଥ ଯୁଧିଷ୍ଠିରଙ୍କ ପରି ନୀରବ ଦର୍ଶକ କେବଳ ନଥିଲେ, ମୋତେ ଓ ମୋର ପରିବାରକୁ ଦୁର୍ବ୍ୟବହାର ମଧ୍ୟ କରିବାର ଆରମ୍ଭ କରିଥିଲେ । ମୋଟାମୋଟି କହିବାକୁ ଗଲେ ଅବସ୍ଥା ଏପରି ହୋଇଉଠିଥିଲା ଯେ, ମହାନ୍ ପ୍ରକୃତି ମୋର ଅସ୍ତିତ୍ୱକୁ ନିଶ୍ଚିହ୍ନ କରିଦେବାପାଇଁ ସତେ ଯେପରି ଏକାଠି କରିଥିଲା ତାର ପ୍ରଳୟ ମେଘ, ବଜ୍ର, ବିଜୁଳି, ଭୂମିକମ୍ପ, ଝଡ଼, ଆଦିମ ଚକଟା ଅନ୍ଧକାର । ଗୃହସ୍ଥ ସେଦିନ ମୋତେ ତାର ବାରଣ୍ଡାରେ ଠିଆ ହେବାକୁ ଦେଇନଥିଲା, ପଥ ବା ସରଣୀ ମୋତେ ତାର ବୁକୁ ଉପରେ ବାରଣ କରିଥିଲା ବାଟ ଚାଲିବା ପାଇଁ, ପବନର ପ୍ରତି ରନ୍ଧ୍ର ଭିତରୁ କୋଟି କୋଟି ଉଦ୍‌ଫଣ ଅହି ମୋତେ ବିଷଦଂଶନ କରିବାକୁ ଉଦ୍ୟତ ଥିଲା । ହଠାତ୍ ଆକସ୍ମିକଭାବେ ଘନଘୋର ଅନ୍ଧକାର ମଧ୍ୟରୁ ନବଅର୍କ ପରି ମୋତେ ଓ ମୋ ପରିବାରକୁ ରକ୍ଷା କରିବା ପାଇଁ ଆଗେଇ ଆସିଥିଲେ ଦୁଇଜଣ ମହାନୁଭବ ମାନବତାବାଦୀ ମଣିଷ । ସେମାନେ ହେଲେ ତତ୍କାଳୀନ ଓଡ଼ିଶାର ପୁଲିସ ଆଇ. ଜି. ଓ ସମ୍ପ୍ରତି ଜାତୀୟ ପୁଲିସ ଏକାଡ଼େମୀ (ହାଇଦ୍ରାବାଦ)ର ଡାଇରେକ୍ଟର ଶ୍ରୀ ବିଜନକୃଷ୍ଣ ରାୟ, ଆଉ କେନ୍ଦ୍ରାଞ୍ଚଳ ପୁଲିସ୍ ଡି. ଆଇ. ଜି. ଶ୍ରୀ ଧ୍ରୁବ ନାରାୟଣ ସିଂ । ଶକ୍ତିଶାଳୀ ଅପରାଧୀଚକ୍ର ବିରୁଦ୍ଧରେ ସେତେବେଳର ସେମାନଙ୍କ ପୁଲିସ କାର୍ଯ୍ୟାନୁଷ୍ଠାନ ନାଗରିକ ଅଧିକାରର ସୁରକ୍ଷା କ୍ଷେତ୍ରରେ ଏକ ଇତିହାସ ସୃଷ୍ଟି କରିଯାଇଛି । ତା ନହେଲେ ମୋର ଅସ୍ତିତ୍ୱ ଆଜି ନଥାନ୍ତା । ଏହି ମହାନ୍ ବ୍ୟକ୍ତି ଦ୍ୱୟଙ୍କ ଋଣଭାର ମୋ ପକ୍ଷରେ ପରିଶୋଧ କରିବା ଏକବାରେ ଅସମ୍ଭବ । ସେମାନଙ୍କର ସେତେବେଳର ସେହି ନିଷ୍ଠୁର କାର୍ଯ୍ୟାନୁଷ୍ଠାନ ଯଥେଷ୍ଟ ନୁହେଁ ବୋଲି ଦୁଃଖ ପ୍ରକାଶ କରି ମୋ ସ୍ତ୍ରୀଙ୍କୁ ଏକ ଐତିହାସିକ ପତ୍ର ଜରିଆରେ ହାଇଦ୍ରାବାଦରୁ ପୂର୍ବତନ ପୁଲିସ ଆଇ. ଜି. ଶ୍ରୀ ରାୟ ଗତ ତା ୨ । ୨ । ୮୦ରିଖରେ ଯାହା ଲେଖିଥିଲେ ନିମ୍ନରେ ତାହା ଉଦ୍ଧାର କରିବା ପୂର୍ବରୁ କହିରଖେ, ତାଙ୍କର ଏହି କଥନ ନାଗରିକ-ଅଧିକାରର ସୁରକ୍ଷା ଇତିହାସରେ ଏକ ଅମୂଲ୍ୟ ଦଲିଲ ହୋଇ ରହିବ ଚିରକାଳ । ଶ୍ରୀ ରାୟ ଲେଖିଥିଲେ, "× × ସ୍ନେହର ଭଉଣୀ ବକୁଳ୍ ! × × ମୁଁ ତମ ପାଇଁ ବା କ'ଣ କରିଛି ? ତମମାନଙ୍କର ଦୁଃଖ କଷ୍ଟରେ ସହାନୁଭୂତି ଜଣାଇବା ବ୍ୟତୀତ ମୋର ବା ଅବଦାନ କେତେ ଟିକେ ? ମଣିଷ ହିସାବରେ ତମମାନଙ୍କର ବଞ୍ଚିରହିବାର ଅଧିକାର ଅଛି ମାନଇଜ୍ଜତ ନେଇ ଶିର ଉନ୍ନତ କରି । ସେଇ ଅଧିକାର ଯେତେବେଳେ ଅନେକେ ଖର୍ବ କରିବାର ଚେଷ୍ଟା କରିଛନ୍ତି ସେତେବେଳେ କେତେଟିକେ ବା ତୁମମାନଙ୍କୁ ଆଇନର ଆଶ୍ରୟ ମୁଁ ଦେଇପାରିଛି ? ଆହୁରି ବହୁତ କାମ

କରିବା ଉଚିତ ଥିଲା—ଯାହା ଇଚ୍ଛା ଥିଲେ ବି କରିପାରିନାହିଁ—ହୁଏତ ବା କାଳ୍ପନିକ ଭୟରେ କମ୍ବା ଆତ୍ମବିଶ୍ୱାସର ଅଭାବରେ । ଆଇନ ଯଦି ମାନବିକ-ଅଧିକାର, ମାନବିକ-ବିକାଶ, ମାନବିକ ମୂଲ୍ୟବୋଧରେ ସହାୟକ ନହୁଏ, ତାହେଲେ କେଉଁଥିପାଇଁ ଆଇନର ପ୍ରୟୋଜନ ? ଆମେ ଯେଉଁମାନେ ଆଇନଶୃଙ୍ଖଳା ରକ୍ଷାର ଦାୟିତ୍ୱ ନେଇଛୁ—ଅନେକ ସମୟରେ ଭୁଲିଯାଉ ମାନବିକଅଧିକାର ରକ୍ଷା କ୍ଷେତ୍ରରେ ଆଇନର ଭୂମିକା । ରବି ସିଂଙ୍କ କେସ୍‌ରେ ଆମେ କ'ଣ ପାରିଛୁ ଆଇନକୁ ସେଇ ମର୍ଯ୍ୟାଦା ଦେଇ ? × ×"

ସେ ଯାହାହେଉ, ଏ ସବୁ ସତ୍ତ୍ୱେ ବି ମୁଁ ବିପ୍ଳବୀ କବି ଭାବରେ ଆଜି ବି ଜୀବିତ, କର୍ମମୁଖର ଓ ସାଧନାରତ । ମୋର ବଂଶୀଟିକୁ ଶତସହସ୍ରବାର ମୋ ହାତରୁ ଛଡ଼ାଇ ନିଆଯାଇ ଭାଙ୍ଗି ଦିଆଯାଇଛି; କିନ୍ତୁ ମୋ ବଂଶୀର ସୁର୍ ମରିନାହିଁ—ମରିପାରେନା, କାରଣ ତାହା ବଂଶୀରେ ନଥାଏ, ଥାଏ ମୋ ଓଠରେ ଓ ହୃଦୟରେ । ମୁଁ ବଂଶୀ ଅତୀତରେ ବଜାଇଛି, ଆଜି ବି ବଜାଉଛି, ଭବିଷ୍ୟତରେ ବି ବଜାଇବି । ବଂଶୀର ସୁର୍ ଯେଉଁଦିନ ମୋ ଭିତରୁ ମରିଯିବ ସେହି ଦିନଠାରୁ ମୁଁ ଆଉ ଲେଖକର ପବିତ୍ର ମସୀ ସ୍ପର୍ଶ କରିବି ନାହିଁ—ଏ ପ୍ରତିଶ୍ରୁତି ପାଠକ ଦରବାରରେ ଉପସ୍ଥାପିତ କରୁଛି ।

ହେଲେବି ଉଲ୍ଲିଖିତ ଏ ସମସ୍ତ ସାମଗ୍ରିକ ଘଟଣାରେ ମୋର ବିପ୍ଳବୀ କାବ୍ୟପୁରୁଷ ଗଭୀର ଆନନ୍ଦିତ ଓ ଗର୍ବିତ, କାରଣ ମୁଁ ଜଣେ ସଚ୍ଚା ବିପ୍ଳବୀ । ଶଠ-ବିପ୍ଳବୀକୁ ଚିହ୍ନିବାର, ଅନୁଭବ କରିବାର ଏକ ମାପକାଠି ହେଲା—ତମେ ଯଦି ସଚ୍ଚା ବିପ୍ଳବୀ ତାହେଲେ ଶତ୍ରୁ, ସମାଜ, ସରକାର ତମକୁ ନିପାତ କରିବା ପାଇଁ ଲଗାତର ଆକ୍ରମଣ କରୁଥାଉ । ତାହେଲେ ଜଣାଯିବ ତମ ବିପ୍ଳବିତ୍ୱ ଭିତରେ କୌଣସି ଦୋଷ ନାହିଁ । ଯଦି ଶତ୍ରୁ ତମପ୍ରତି ତା ନିକର ତମର ପ୍ରଶଂସା କରେ, ତା ଦସ୍ତାର ସ୍ୱୀକୃତି ଦିଏ, ଆକ୍ରମଣର ପ୍ରାବଲ୍ୟ କମାଏଁ, ତାହେଲେ ତମ ବିପ୍ଳବିତ୍ୱ ଭିତରେ କିଛି ଦୋଷତ୍ରୁଟି ରହିଛି । ଏହି ମାପକାଠିରୁ ମୁଁ ଜଣେ ସଚ୍ଚା ବିପ୍ଳବୀ—ଏହାହିଁ ମୋର ଗର୍ବ ।

'ଅଗ୍ନିବେଦ'ର କବିତାମାନେ ନିଜ ତତ୍ତ୍ୱର ନିଜେ କଥକ । ମୁଁ ସେମାନଙ୍କ ତତ୍ତ୍ୱ ଅଧିକ କ'ଣ କହିବି ?

ପରିଶେଷରେ 'ଅଗ୍ନିବେଦ'ର ପ୍ରକାଶକଙ୍କୁ ଗଭୀର ଧନ୍ୟବାଦ ଦେଇ ନୀରବ ରହୁଛି ।

୬. ୭. ୮୧.

# ସୂଚୀ

# ରାସ୍ତା

a good poem impersonal

କିଏ ଗଲା, କେ ଆସିଲା, ଜାଣ ତମେ ତାହାର ଖବର
ହେ ରାସ୍ତା, ହେ ସରଣୀ, ନମସ୍କାର ଘେନ ଏ କବିର !

ଦିବାରାତ୍ର ନୀରବରେ ଶୋଇଅଛ, ମୁଖେ ନାହିଁ ବାଣୀ
ହେ ଧୂସର, ହେ ଗୈରିକ, ନିପୀଡ଼ିତ ହେ ଚିର ମଉନୀ !

କାହିଁ ତମେ କଂକରିଲ, କେଉଁଠାରେ ପିଚୁ ତମ ଦେହ
କେଉଁଠି ତମେ ତ କର୍ଦ୍ଦ, ବିସର୍ପିଳ ଶୀର୍ଣ୍ଣ ଅଭିଶପ୍ତ !

ଦିବସରେ ରୌଦ୍ରଦାହ, ନିଶୀଥରେ ହାଡ଼ଭଙ୍ଗା ହିମେ
ପ୍ରାବୃଟରେ ବାରିପାତେ ଶୋଇଥାଅ ନୀରବେ ମଉନେ ।

ହେ ରାସ୍ତା, ହେ ସରଣୀ, କୁଳବୃଦ୍ଧ କହିବକି ଥରେ,
କିଆଁ ହେଲ ଚିର ମୂକ, କେଉଁ ବ୍ୟଥା କେଉଁ ବେଦନାରେ ?

ଯୌବନେ କି କେବେ ତୁମେ କେଉଁବାଳା, କେ କିଶୋରୀ ପାଶେ
କରିଥିଲ ପ୍ରେମଭିକ୍ଷା, ଫେରିଥିଲ ଆଘାତେ, ନିରାଶେ ?

କିଏ ସେହି ଗରବିଣୀ ପୀନବକ୍ଷା, ନିତମ୍ବିନୀ-ବାଳା ?
ନିଷ୍ଠୁର ଚିହ୍ନିଛ ତାକୁ, ଯିଏ ତବ ଛିନ୍ନ କଲା ମାଳା ।

କା'ରେ ନ କହିଲେ ନାହିଁ, ମୋତେ କୁହ ସ୍ଥିତପ୍ରଜ୍ଞ ପଥ !
କେଉଁଥି ପାଇଁକି, କିଆଁ, କେବେହେଲ ତମେ ପରାଭୂତ ?

କି ବ୍ୟଥା ବାଜିଲା ବୁକେ ସଂଗୋପନେ, ତାହାର ଖବର
ପାଇନି, ପାଇବିନାହିଁ ଏ ଦୁନିଆ ହେ ସରଣୀ ତମର ଅନ୍ତର—

ଗର୍ଭରେ ଯେ ଲୁକ୍‌କାୟିତ ଜ୍ୱାଳା ଆଉ ଯନ୍ତ୍ରଣାର ଖଣି
ନାହିଁ ତ ଆଗ୍ରହ କା'ର ସେହି କଥା ପାରିବାକୁ ଜାଣି !

କ୍ଷୁବ୍ଧ ପଥ, କ୍ଷୁବ୍ଧ ତା କାରଣ !

ଥିଲ କେବେ କବି, ଶିଳ୍ପୀ, ଥିଲ କେବେ ତମେ ଦେଶପ୍ରାଣ ?

ଦେଶର ଦୁର୍ଦ୍ଦଶା ଦେଖି, ଦେଖି ଶିଳ୍ପକଳା ଅଧୋଗତ
ହରାଇ ଥିଲ କି କେବେ ମାନସିକ ସମସ୍ତ ସଂହତ ?

ଅବା ନିଜ ବେନି ପ୍ରାନ୍ତେ ଗୁପ୍ତାଧନ ତନ୍ତ୍ରବାୟୀ ତଳେ
ଅନ୍ନହୀନ, ବସ୍ତ୍ରହୀନ, ଗୃହହୀନ, ମଣିଷ କଙ୍କାଳେ—

ଦେଖି ଦେଖି ପରିଶେଷେ ହେଲ ମୂକ, ହେଲ କି ବଧିର ?
ତା'ପରେ ନଷ୍ଟପ୍ରାଣ ହୋଇ ଶୋଇଅଛ ହେଲା କେତେକାଳ !

ହେ ଧାନ-ଗମ୍ଭୀର ସୁପ୍ତ ଭାଙ୍ଗିବ କି ନାହିଁ ତବ ନିଦ ?
ସବୁ ଦେଖ, ସବୁ ଶୁଣ, ଜାଣ ପଥଚାରୀର ସମ୍ବାଦ ।

ନିଜର ସମ୍ବାଦ କା'ରେ ଦେଲନାହିଁ ଲାଗେ ଆଚମ୍ବିତ
ଅଦ୍‌ଭୁତ ଜୀବନ ତବ, ହୋଇନାହିଁ ଯାହା ଆବିଷ୍କୃତ ।

କେତେ ପଥ-ଚାରୀ ଗଲେ ବୁକେ ତବ, ଆସିଲେ ବା ଫେରି
ଗଲେ କେତେ ସର୍ବହରା, ବୃଦ୍ଧ ଆଉ ଶିଶୁ-ନରନାରୀ ।

କେତେ ଯେ ବେକାର ଗଲେ ଖୋଜିବାକୁ ଚାକିରୀ ଯୌବନେ
କେତେ ଶବ-ଶୋଭାଯାତ୍ରା ତମ ବୁକେ ଗଲା ଶ୍ମଶାନେ !

ପୁଚ୍ଛ ପିଟି ଗଲା କେତେ ବୁକେ ତବ ଦୀର୍ଘ ପଟୁଆର
ତତଲା ଜିଅନ୍ତା' ଗୁଳି ପ୍ରାଣନେଲା କେତେ ହେକଲର !

ସବୁର ହିସାବ ଦେଇ ଆହେ ପଥ କଥାକ୍ଷୁବ୍ଧ ବାରେ
ଅନୁରୋଧ କରେ କବି ଶତାବ୍ଦୀର ଏ ଶେଷ ପ୍ରହରେ ।

କୁହ କଥା, ଆଖି ଖୋଲ, ଥରଟିଏ ଲେଉଟାଅ କଡ଼ !
ଉଦ୍ଧତ କନ୍ଧର-ଗ୍ରୀବା ଟେକ ଥରେ ହେ ନଥର, ଜଡ଼ !

ତମର ଜାଗ୍ରତ ଫଳେ ଛିନ୍ନହେଉ ପଶୁଭୂର ସମସ୍ତ ସଂଯୋଗ
ଘଟୁ ମହା ଦୁର୍ଘଟଣା, ଲୋପ ହେଉ ଶୋଷଣର ଗତି ଆଉ ବେଗ ।

'ତଳ'ଟା 'ଉପରେ' ଆସୁ, 'ଉପର'ଟା ଯାଉ ରସାତଳେ
ତମର ସେ ପୁଞ୍ଜୀଭୂତ ବ୍ୟଥା ଆଉ ବେଦନା-ଅନଳେ—

ଯାଉ ସବୁ ଜଳିପୋଡ଼ି, ମଥା ତୋଳ ଶାଣିତ-ସରଣୀ,
ସବୁର ଉର୍ଦ୍ଧ୍ୱରେ ଥରେ କଥାକୁହ ଶୁଣୁ ଏ ଧରଣୀ ।

ହେ ସ୍ରଷ୍ଟା ପ୍ରଣତ ଯେନ ଏ କବର ପାଇ ଜୀବନ୍ୟାସ,
ଭାଙ୍ଗୁ ନିଦ, ପାହୁ ରାତି, କଥା କହୁ ଲୁପ୍ତ ଇତିହାସ ।

କଟକ
ତା ୧ । ୧ । ୭୮

# ପୃଥିବୀ, ମୋତେ କର ହେ କ୍ଷମା !

ପୃଥିବୀ, ମୋତେ କର ହେ କ୍ଷମା
ଜନ୍ମିଥିଲି ତମରି କୋଳେ
କଲିଣି ବହୁ ପ୍ରାର୍ଥିତ ମୁଁ
ଗାବି ଦେବା ଯୁଦ୍ଧାନଳେ ।

ପାଇନି ଦିନେ ବିଶ୍ରାମ ତ
ଜଳୁଛି ପୁଣି ଜାଳୁଛି ନିତି
ମାରୁଛି ଆଉ ମରୁଛି ସଦା
ଲେଖୁଛି ବସି ସମର ଗୀତି ।

ସମ୍ମୁଖରେ ପାହାଡ଼ ଧସେ
ଚରଣ ତଳେ ଭୂ-କଂପନ
ଊର୍ଦ୍ଧ୍ୱେ ଝଡ଼-ବାଦଲ ରାତି
ଲଢ଼ାଇ ମୋର ମରଣପଣ ।

ସୂର୍ଯ୍ୟ ଉଠେ, ସୂର୍ଯ୍ୟ ବୁଡ଼େ
ଦିବସ ଯାଏ, ଆସଇ ରାତି
ସତ୍ୟ, ନ୍ୟାୟ, ନୈତିକତା
ସୈନ୍ୟ ମୋର ସମର ସାଥୀ ।

ଦୈନ୍ୟ ମୋର ସମ୍ବଳ ତ
ମୁକୁଟ ମୋର ଅହଂକାର
ତୃଷ୍ଣା ମୋର ପାନୀୟ-ଜଳ
କୃଷ୍ଣାରିତ ଅସ୍ତ୍ରାଗାର ।

ଅସି ତ ଥିଲି ଅରୁଣ ବେଶେ
କରୁଣେ ଶେଷେ ବିଦାୟ ନେବି
ଜଳୁଛି 'ରବି' ମଧ୍ୟାକାଶେ
ଜାଳୁଛି କୋଟି ରାହୁର ଛବି ।

ପୃଥିବୀ, ମୋର ଦୁଃଖ ନାହିଁ
ହୃଦୟ ମୋର ସ୍ପନ୍ଦମାନ
ମଣିଷ ପାଇଁ ଲଢ଼ି ମୁଁ ଗଲି
ଗାଇ ତ ଗଲି ଜୀବନ ଗାନ ।

ମୁଣ୍ଡ ମୋର ପାରିନି ବଙ୍କ
ଅସ୍ତ୍ର କେବେ ଥୋଇନି ତଳେ
ଅନ୍ୟାୟର ଜବାବ ସଦା
ଦେଇଛି କବି ଅସ୍ତ୍ରଧାରେ ।

ଅନାଇ ନାହିଁ ପଛକୁ ଫେରି
ଘନାୟମାନ ଅନ୍ଧକାର
ଆଗକୁ ସଦା ପଡ଼ୁଛି କୁଦି
ସତ୍ୟ-ଶିବ-ସୁନ୍ଦରର—

ମୂଲ୍ୟବୋଧ ପାଇଁ କି କବି
ବିଧାତା ସମ ନିର୍ମମ ମୁଁ
ବିଚ୍ୟୁତ ମୋ ଘଟିନି କେବେ
ସତ୍ୟ ଆଉ ମାନବ-ପ୍ରେମୁଁ ।

ପୃଥିବୀ ଆହେ ଗଲ ମୁଁ ଗୁଡ଼
ପଚ୍ଛରେ ଯେଉଁ ଚରଣ ରେଖା
ସାଲସ୍ ନୁହେଁ, ସଂଗ୍ରାମର
ଝଣ୍ଡା ଟର ରକ୍ତମଖା ।

ଏଇ ହେବ ଆଗାମୀ ପାଇଁ
ପାଥେୟ ଆଉ ପୁଞ୍ଜି ପଂର
ଧନକୁ ଧନ ବର୍ଦ୍ଧିତ ସେ
ହୋଇବ ତାହା ତମର କୋଳେ !

ଜୀବନ ସାରା ରକ୍ତଝରା
ଆଘାତ କଲ ଅସତ୍ୟକୁ
ପାଇଲ ବହୁ ଦୁର୍ଦ୍ଦଶା ହେ
ମରବେ ତମେ ଦେଖିଲ ତାକୁ ।

କହିଲ ନାହିଁ ପଦଏ କଥା
ହୋଇଲ ନାହିଁ ଦଣ୍ଡେ ଠିଆ
ଘୂରିଲ ସଦା କଷ୍ଟପଥେ
ବକ୍ଷେ ଧରି ସୃଷ୍ଟି ମହା ।

କଳଂକିତ କୃଷ୍ଟି, କଳା
ପୁଞ୍ଜିବାଦ, ଶୋଷଣ କ୍ଷତ,
ଅମିତ ଆଉ ଅତ୍ୟାଚାର
ଯୁଦ୍ଧ ପୁଣି ରକ୍ତପାତ ।

ବିରାଟ ଏକ ପାପର ଭିଟି
ପଶୁତ୍ୱର ଅନ୍ଧକାର
ବନାନୀ ପୁଣି ପାହାଡ଼-ମାଳା
ଗଭୀର ସାତ ସାଗର ଜଳ ।

ଲୁପ୍ତ ବହୁ ସଭ୍ୟତାର
ଶବକୁ ନିଜ କାନ୍ଧେ ବହି
ପାଗଳ ପରି ଘୂରୁଛ ତମେ
କେଉଁଥି ପାଇଁ କହିଲ ନାହିଁ ?

ଫିଙ୍ଗ ଆଜି ପୃଥିବୀ ଥରେ
ବହୁଛ ଯେତେ ପାପର ଭରା
ଲଂଘୁ କୂଳ ସାଗର-ଜଳ
ଚୂର୍ଣ୍ଣ ହେଉ ପାହାଡ଼-ମାଳା ।

'ଉପର' ଯେତେ ତଳକୁ ଯାଉ
'ତଳ'ଟା ଆସୁ ଉପରେ ଉଠି
ପ୍ରଳୟ କରୁ ଅଟ୍ଟହାସ
ଅନ୍ଧକାରେ ବିଦ୍ୟୁନଟୀ ।

ସୃଷ୍ଟି ପାପେ ବିଧାତା କରୁ
କରୁଣେ ତା'ର ଆର୍ତ୍ତନାଦ
ନିଃସ୍ୱ ହେଉ ଈଶ୍ୱରଟା
ପାଲଟି ଯାଅ ବାଷ୍ପ ହ୍ରଦ ।

ପୃଥିବୀ ଥରେ ବନ୍ଦକର
ଆହ୍ନିକ ସେ ତମର ଗତି
ଘୂର୍ଣ୍ଣନର ପ୍ରଣବ ନାଦ
ସ୍ତବ୍ଧ ହୁଅ ମୌନାବସ୍ଥ ।

ଥରଟେ ଖାଲି ଶୁଣାଅ ଧରା
ଶୁଣାଅ ତବ କଂଠବାଣୀ
ପଶ୍ଚରେ ଚିର ବିଦ୍ରୋହୀ ମୁଁ
ବକ୍ଷେ ତବ ଆଘାତ ହାଣି ।

ପାଷାଣୀ ମୂକ ଅହଲ୍ୟା ଗୋ
ଆଦ୍ଦମ ଚିର ମୌନାବସ୍ଥ
ବିଦାୟ ବେଳେ ଡାକେ ମୁଁ କବି
ଆସ ଗୋ ଅଭିଶପ୍ତା ଅନ୍ତ ।

ସ୍ପର୍ଶେ ମୋର ମୁକ୍ତି ଲଭ
ଫିଟାଅ କହ ଆଦ୍ଦମ ଭାଷା
କାହିଁକି ତବ ବକ୍ଷେ ଏତେ
ଅନ୍ଧକାର ଦୁଃଖ ନିଶା ?

ପୃଥିବୀ ଯଦି ନ କୁହ ମୋତେ
ନ ଆସି ପାଖେ ସତ୍ୟ କଥା
ତାହେଲେ ତବ ମୁକ୍ତି ନାହିଁ
ଧୂରୁ ତ ଥିବ ଧୂଳିଲ ମଥା ।

ଆତୁର ଦେବ ମୁଁ ଅଭିଶାପ
ବିଦାୟ ବେଳେ କୋଳରୁ ତୋର
ସନ୍ତୁଷ୍ଟ ମୋ ଜନ୍ମ ନେବେ
ବିଦ୍ରୋହୀର ବଂଶଧର ।

ଆଣିବେ ଝଡ଼, ଭୂ-କଂପନ
ଅଶାନ୍ତିର ଜାଳିବେ ହୁଳା
ଲକ୍ଷ କୋଟି ହାତ୍ରକାରୀ
ଧରଣୀ, ତବ ଧରିବେ ଗଳା ।

ଯାଉଛି ମୁହିଁ ପଶ୍ଚିମକୁ
ଆସିବ ପୁଣି ପୂର୍ବ କାଲି
ସଂଗେ ନେଇ ମରଣଜୟୀ
ଅରୁଣ ଥାଟ ରକ୍ତ ନାଲି ।

ଜାଳିବ ନଆଁ ଦୁନିଆ ସାରା
ଆଣିବ ମହା ଆନ୍ଦୋଳନ
ଶ୍ରବଣେ ତୋର ଘଟାଇ ନିତି
'କୋଟିଏ ବୋମା ବିସ୍ଫୋରଣ ।

ଶାନ୍ତିରେ ମୁଁ ରଖାଇ କେବେ
ଦେବି ତ ନାହିଁ, ରୋଧିବ ଚିତ୍ତ
ବୁଝିବ ସେବେ ପୃଥିବୀ ତମେ
ମୌନତାର କ ପରିଣତି ।



(ଆକାଶବାଣୀ, କଟକ ସୌଜନ୍ୟରୁ)

ତା ୨୪ । ୩ । ୭୮

# ଏ ପୃଥିବୀ ଆମର

ମୋତେ ମୁକ୍ତକର
ମୋତେ ମୁକ୍ତକର
ଏ ଭୋଟ୍-ରାଜନୀତିର ପୃଥିବୀର
ନରକ ଭିତରୁ ।

ମୋତେ ମୁକ୍ତକର
ଏଠି ମୋର ଶାନ୍ତି ନାହିଁ
ନାହିଁ ବିଶ୍ରାମ ।
ଏଠି ସବୁବେଳେ
ନୈତିକ - କୁଷ୍ଠରୋଗୀ
ଭୋଟ୍-ଭିକାରି ମାନଂକର
କ୍ରମାଗତ ଚିତ୍କାର ।

ଭୋଟ୍ ଆସେ
ଭୋଟ୍ ଯାଏ,
ନୂଆ ବୋତଲରେ ପୁରୁଣା ମଦ
ଢଳଢଳ ହୁଏ ।

ଭୋଟ୍ ଦଅନ୍ତି କୋଟି କୋଟି ଲୋକ ;
ଶାସନ କ୍ଷମତା କିନ୍ତୁ ଦଖଲ କରନ୍ତି
ମୁଷ୍ଟିମେୟ କେତେଜଣ ଲୋକ !
“ଭାରତୀୟ-ଗଣତନ୍ତ୍ର”ର ଏହାହିଁ ମହିମା ।

ମାୟାମୃଗ ପଛରେ,
‘ସମାଜବାଦ’, ‘ବିଂଶସୂତ୍ରୀ’, ‘ପୂର୍ଣ୍ଣକ୍ରାନ୍ତି’ର ମୋହରେ
ଦୌଡ଼ୁଛନ୍ତି ଷାଠିଏ କୋଟି ଲୋକ
ତିରିଶ ବର୍ଷ ହେଲା ॥

ଏ ଦୌଡ଼ ବନ୍ଦ ହେଉ ;
ସବୁକିଛି ନିସ୍ପନ୍ଦ ହେଉ କ୍ଷଣକ ଲାଗି ;
ସାଗର-ମେଖଳା, ବନାନୀ-ବିଭୂଷା
ଲୌହଗର୍ଭା ଧରିତ୍ରୀର ଆହ୍ନିକ ଗତି
ବନ୍ଦ ହେଉ କ୍ଷଣକ ଲାଗି ।

ଜଳେ, ସ୍ଥଳେ, ଅନ୍ତରୀକ୍ଷେ
ସମାଜର ମୂଳ ଉତ୍ପାଦିକା ଶକ୍ତି
ଅଗଣିତ ମେହନତି ମଣିଷ
ଥରେ ମାତ୍ର ବ୍ରେକ ହେଉ ଠିଆ,
ଇତିହାସର ପ୍ରଚଣ୍ଡ ଗର୍ଭବେଦନା
ଆଉ ତା’ର କୁଂଥନ
ଆରମ୍ଭ ହେଉ,
ଜନାରଣ୍ୟ ଭିତରୁ ଉଠୁ
ଏକ ପ୍ରଚଣ୍ଡ ଘୃଣାର ସାଇକ୍ଲୋନ୍ ।

ଅଶୁଭ, ଅମଂଗଳ,
ଜନଶତ୍ରୁର ଷଡ଼ଯନ୍ତ୍ର-ଚକ୍ରାଧାର,
ତା'ର ମୂଲ୍ୟବୋଧ ଉପରେ
ଅଜାଡ଼ି ହୋଇପଡ଼ୁ ମହାମେରୁ କପିଳାଶ ।
କୋଟି କୋଟି ଅସ୍ଲାତ-ବାହୁର ମେଖଳା
ବ୍ୟୂହ ରଚନା କରୁ,
ପତାକା ପର ଗର୍ବିତ ହେଉ
ବିପ୍ଳବର ଅମ୍ଳାନ-ଶୈଶବ ।

ଯାହା ସ୍ଥିତ, ଯାହା ବ୍ୟବସ୍ଥିତ,
ଯାହା ଅକଲ୍ୟାଣ ;
ତାହା ଭାଂଗୁ
ସଂଗଠିତ ମଣିଷର ହାତୁଡ଼ି ଶାବଳର
ନିର୍ମମ ଆଘାତରେ
ମୁକ୍ତିଧାନର ମଂଜଣି ଶିଖା ପାଇଁ,
ନୂଆ ଦୁନିଆର ମଣିଷ ପାଇଁ
ସୁଖୀ-ସୁନ୍ଦର-ସାମ୍ୟବାଦୀ ଭାରତର
ନବଜନ୍ମର ସ୍ୱପ୍ନ ଭିତରେ ।

ଆମେ ସ୍ୱାଧୀନତା ଚାହୁଁନା—ମୁକ୍ତିଚାହୁଁ ।
ସ୍ୱାଧୀନତା ଆଉ ମୁକ୍ତି ଏକା ଜିନିଷ ନୁହେଁ ।
ଆମେ ସ୍ୱାଧୀନତାକାମୀ ନୋହୁଁ—ମୁକ୍ତିକାମୀ ।
ଭୋଟ୍‌ବାକ୍‌ସ ଭିତରୁ ମୁକ୍ତି ଆସେନା,
ମୁକ୍ତି ଆସେ ରକ୍ତନଦୀର ବଂକିମ-ବାହୁ ଦେଇ ।
ଜନଯୁଦ୍ଧ ହିଁ ରାଜନୀତିର ଧାରାବାହିକତା,
ସେହି ଜନଯୁଦ୍ଧ ହିଁ ରାଜନୀତିକ କାର୍ଯ୍ୟାନୁଷ୍ଠାନ ।

ଏ ସତ୍ୟକୁ ବିଶ୍ୱାସ କରିବା ଅର୍ଥ
ଗ୍ରେଟ୍-ଭିକାରିମାନଂକ ଥାଳକୁ
ଭାଂଗି ଚୂର୍ଣ୍ଣବିଚୂର୍ଣ୍ଣ କରିବା ।;

ଆମର୍ ବାସ ନାହିଁ,
ଅନ୍ନନାହିଁ, ବସ୍ତ୍ରନାହିଁ, ଅସ୍ତ୍ରନାହିଁ,
ନୋଟ୍ ନାହିଁ, ଗ୍ରେଟ୍ ବି ନାହିଁ ।
ଯାଓ ! ଭିଗେ !! ହାଲ୍ଲା ମଚ୍ଚକରେ
ଆମର ଅଛି ଦାସତ୍ୱର ଶୃଂଖଳ ।
ତାହା ଛିଡ଼ିବ, ଅଲ୍‌ବତ୍ ଛିଡ଼ିବ
ଆଜ ନହେଲେ—କାଲି
ଏ ପୃଥିବୀ ଆମର ।



କଟକ
ତା ୩୧ । ୮ । ୭୭

# ମୂକ ହେବା ଆଗରୁ...

ଦିନପଞ୍ଜି ଲେଖିବାକୁ ଆଗ୍ରହ ନାହିଁ ।
ଦିନପଞ୍ଜି ପୃଷ୍ଠାରେ ଘଟଣା ବହୁଳ ଗୋଟିଏ ଗୋଟିଏ
ରକ୍ତାକ୍ତ ଦିନର ଘଟଣା ଜାଗା ହେବ ନାହିଁ ।

ଇତିହାସ ଲେଖିବି କାହାପାଇଁ ?
ଲେଖିବାକୁ ଆଗ୍ରହ ବି ନାହିଁ ।
କାରଣ ଇତିହାସ ଗର୍ଭଧାରଣ କରିବାକୁ ଅକ୍ଷମ
ମୋ ଜୀବନର ପ୍ରତି ମୁହୂର୍ତ୍ତରେ ଘଟୁଥିବା
ଆତଂକଜନକ, ଖ୍ୱିତପ୍ରଦ ଘଟଣାଗୁଡ଼ିକୁ ।

କବିତା ଲେଖିବାକୁ ଆଗ୍ରହ ନାହିଁ ।
କବିତାର ମୁଖଶ୍ରୀ ମୋର ରକ୍ତାକ୍ତ,
ହଜାର ହଜାର ମୁଖ, ଲକ୍ଷ ଲକ୍ଷ ଆଘାତ,
ଅସଂଖ୍ୟ କ୍ଷତଚିହ୍ନ ତା'ର ଅବୟବରେ ।

ଶ୍ୱେରକୁ ଶ୍ୱେର
ପଶୁକୁ ପଶୁ
ଅନ୍ୟାୟକୁ ଅନ୍ୟାୟ କହିବାର ଦୁର୍ଜୟ ସାହସ
ଥିଲେ ବି
ସାମର୍ଥ୍ୟ ନାହିଁ ।

ମୋ ଆଖି ଆଗରେ ସତ୍ୟ ଆଜ ଶ୍ୱାସରୁଦ୍ଧ,
ବିବେକ ବଧିର,
ନ୍ୟାୟ ଓ ନୈତିକତା ଖନା ।

ପୁରାତନ ମୂଲ୍ୟବୋଧ ଗୁଡ଼ିକର ପିରାମିଡ଼୍
ଆଜ
ଗୁଣ୍ଡା, ଲୋଫର୍, ମଦ୍ୟପଙ୍କ ଆଘାତରେ
ଭୁଷୁଡ଼ି ପଡୁଛି ପ୍ରତିନିୟତ ।
ତାକୁ ବାଧା ଦେବାର ଶକ୍ତି ମୋର ଆଉ ନାହିଁ ।
ବାଧାଦେଲେ, ପ୍ରତିବାଦ କଲେ
ମୋର ନିଦ୍ରିତ ଶିଶୁ ଓ ସହଧର୍ମିଣୀ ଉପରେ
ଚାଲିବ ଅତ୍ୟାଚାର, ଆକ୍ରମଣ । ଚାଲିଛି ।

ତେଣୁ ମୁଁ ମୂକ ହେବାକୁ ଚାହେଁ
କାରଣ, ମୂକ ମଣିଷର କେହି ଶତ୍ରୁ ନଥାନ୍ତି ।



କଟକ
ତା ୧୦ । ୧୧ । ୭୮

# ଅନୁଭୂତି

ଆଇନଟା ଆଜ ଉଦାସୀନ ଯଥା
ବରଷ୍ଟ୍ର ପ୍ରେମିକ ପରି,
ପୁଲିସ ହାତରେ ଲଠିର ବଂଶୀ
ସୁର୍ ତାର ଘୁଷ୍‌ଖୋର୍ ।

ଶାସନ ବଧିର, ଇତାଲ୍ ନେବାକୁ
କାହାର ତ କେହି ନାହିଁ
ସ୍ୱୈର ଓ ପୁଲିସ, ଖବର କାଗଜ
କୋଳାକୋଳି ଭିନ୍ନ ଭାଇ ।

ମାଡ଼ ଖାଇ ଯଦି ଯାଏ କେ ଥାନାକୁ
ପ୍ରତିକାର ପାଇଁ ଲୋକ
ସେ ନଜେ ମାରନ୍ତି ମାଡ଼ ଆଗେ ବୋଲି
ସବୁ ଅଭିଯୋଗ ଯାକ—

ଥୁଆ ତା ପାଇଁ କ, ଶେଷରେ କରେ ସେ
ବସ୍ତୁରର ମୁକାବଲା
ପୁଲିସି କର୍ତ୍ତା ପକେଟ ଭିତରେ
ଖବର କାଗଜ ବାଲା—

ସୁଚତୁରେ ଗଳି, ସତ୍ୟ ଘଟଣା
ସବୁ ହଇଅନ୍ତି ଚୁପି
ଜୀବନ ଧାରଣ ନୁହେ ନିରାପଦ
ନାଗରିକ ମାନେ ପାପୀ ।

ପୁଣ୍ୟ ଆତ୍ମା କେବଳ ପୁଲିସ
ସାମ୍ବାଦିକ ଓ ଗୁଣ୍ଡା
ସେହିମାନେ ଆଜ ସମାଜ ଜୀବନେ
ଭଦ୍ର ଓ ବଡ଼ପଣ୍ଡା ।

ଆତ୍ମରକ୍ଷା ଅଧିକାର ନାହିଁ
ଅସ୍ତ୍ର ରଖିଲେ ପାପ
ଅଭିଯୋଗ କଲେ ଆହୁରି ବିପଦ
ନାହିଁ କେହି ମାଆ-ବାପ ।

ଡରାଇ ଶାସିବା ମାତ୍ର ଦୃଢ଼ ଆଜ
ଚୁରିଦିନେ କଳାଗ୍ରୁଇ
ଜନମତ ଆଜ ମୂକ ଓ ପଙ୍ଗୁ
ଡାକ ଛାଡ଼େ ହାହି ହାହି ।

ଦିନ ଦି' ପହରେ ନାରୀ ଧର୍ଷଣ
ଗୋପନ ଅତ୍ୟାଚାର
ଚୋରି, ଡକାୟତି, ନରହତ୍ୟାରେ
ଚୁରିଦିନ ଥରଥର ।

ଉଚ୍ଛୁଳ ଉଠୁଛି ରକ୍ତର ନଦୀ
ଜିଭ ଚଟେ କଳାରାଶି
ଯାହାଟା ଦେଖୁଛି, ତାହାଟା ଲେଖୁଛି
ବିରାମ ବିହୀନ ଯାତ୍ରୀ ।

ଅନାବିଳ ଭାବେ ଲେଖି ତା ଯାଉଛି
ଚଉଦିଗେ ମୋର ଖ୍ୟାତି
ଭାବି ତ ପାରୁନି କେବେ ଏ ସବୁର
ହେବ ଅବସାନ, ଇତି ।



ତା ୩୧ । ୧ । ୧୯୭୯

# ଅଗ୍ନିର ଅନୁରୋଧ

ହେ ଜନତା ଦଳ ! କହୁଛ ନକଲ ନାହିଁ
ଦୟାକର ତମେ ଗୋଟିଏ କାର୍ଯ୍ୟ କର !
ଆପଣା ଭିତରେ ପିଠାପିଠି ହୁଅନାହିଁ
ବାର ବାର ଏଇ ଅନୁରୋଧ ଜନତାର ।

ତମର ଦଳରେ ମାଡ଼ଗୋଳ, ପାଟି ଶୁଣି
ଶାନ୍ତିରେ ବସି ପାରୁନୁ ଗରିବ ଲୋକ,
ଘେର ଉଡ଼ିଥିଲୁ, ଡକାୟତ ହାତେ ପୁଣି
ପଡ଼ିଲା ଏ ଦେଶ, ଯେଉଁ ଭୋକ ସେଇ ଭୋକ ।

ଏ ଦେଶର ପ୍ରତି ଶିରା-ପ୍ରଶିରାରେ ଯେଉଁ
ଦୁର୍ନୀତି ଥିଲା, ଠିକ୍ ସେଇପରି ଅଛି,
ଘୁଷ୍‌ଖୋର ପୁଣି ସୁଧଖୋର ଶୋଷା ଲହୁ
ଶୋଷଣ, କଷଣ, ପେଷଣ କମିନ କହୁ ।

ବସେ କମିଶନ, ତଳଠୁଁ ଉପର ଯାଏଁ
'ରମିସନ୍' ଆମ ହେଲାନାହିଁ ଜମା ଦୁଃଖ,
ଭୋଅଟ ବାଟରେ ଆଉ ସମାଧାନ ନୁହେଁ
ଖୋଲିବୁ ଏଥର ଲଢ଼ାଇର ଶିଳାଲେଖ ।

କଂଗ୍ରେସ ହେଉ, ହେଉ ବା ଜନତା ଦଳ
ହେଉ ସି. ପି. ଆଇ., ଅବା ସି. ପି. ଏମ୍. ଯାହା,
ଯେଉଁଠି ବେପାର ଦେଖିଲା ମାତ୍ରେ ମାର
ସେଇଠି କଥା ଛାଡ଼ ଶୁଣିବୁ କହିବ ଯାହା ।

ଆମରି ସାଥିରେ ମରି ଯେ ପାରିବ ଆସ !
ବଞ୍ଚିବା ପାଇଁ ଲଢ଼ାଇର ହତିଆର—
ଦେଇ ଆମ ହାତେ, ଆମ ସାଥେ ଉପବାସ
ରହି ଯେ ପାରିବ ବିଶ୍ୱାସୀ ସେ ଆମରି ।

ଦୁନିଆ ଆମରି ଲୁହ, ଲହୁ, ଝାଳେ ଗଢ଼ା
ତମ ଦୁନିଆଟା ପ୍ରେମମୟ ତଳ ତଳ,
ଆମ ଦୁନିଆଟା ଶ୍ରମମୟ ପଙ୍କ-ସଢ଼ା
ତମ କୋଳେ ଫୁଟେ ନଶୀଥେ ଷୋଡ଼ଶୀ-ଫୁଲ ।

ତମପରି ଭାଷା, ଭାଷଣ ଶିଖିନୁ ଆମେ
ଆମ ଭାଷା, ଆମ ଭାଷଣଟା ନୀରବତା,
ଯେ ପାପ କରୁଛ 'ନର-ନାରାୟଣ' ନାମେ
ସେହି ପାପ ତଳେ ଜଳୁଛୁ ତମରି ଚିତା ।

ପରିଣତ ଯୁଗର ଶୋଷଣ, ଭୟଙ୍କର
ଭାବ ଥରେ ! ଯଦି ଇତିହାସ ଥିବ ପଢ଼ି,
ଧୂସର ଧରାର ଆମେ ସବୁ କାରିଗର
କାହିଁକି ମରିବୁ ଆମେ ନରକରେ ସଢ଼ି ?

ଜମି ଓ ପୁଞ୍ଜି, ଫ୍ୟାକ୍‌ଟରୀ, ସୁଖ, ଲାଭ
ଅନୁତ୍ପାଦକ ! ତମ ପାଇଁ ହେବ ଥୁଆ !!
ଆମରି ବେଳକୁ ନୀରବ ସତ୍ୟ-ଶିବ
ଆମେ ହେଉଥିବୁ ନଇତ ମଶାଣିମୁହାଁ ।

ବାହାଘର ପରେ ବେଘା ମୁହଁ ହୁଏ ପୋଡ଼ା
ଆମେ ପୋଡ଼ାମୁହାଁ ମରୁଅଛୁ ଜଳପୋଡ଼ି,
ସ୍ଲେଟ୍ ନେଇସାରି ଚଢ଼ୁଛୁ ଉପରେ ଘୋଡ଼ା
ଯାଇଛୁ ଉପରେ ଆମକୁ ତ କରି ସିଢ଼ି ।

ମରି ମରି ଆମେ ଦିନେ ତ ଉଠିବୁ ଜୀଇ
ଆଜି ତ ନ ହେଲେ କାଲି, ଶତାବ୍ଦୀ ପରେ,
ସେଦିନ ତମେ ତ କେଉଁଠାରେ ଥିବ ରହି ?
କେଉଁଠାରେ ଥିବେ ତମରି ବଂଶଧରେ ?

ଯାହା କଲ କଲ ଆପଣା ଭିତରେ ଆଉ—
ହୁଅନାହିଁ ଘାଇ ଗଡ଼ାତଡ଼ା, ପିଟାପିଟି
କୋଠି ଖପୁରିର ତଳେ ନିଆଁ ଦାଉ ଦାଉ
ମାଗେ ଇନ୍ଧନ ଅବିରତ ଜଭ ଗୁଠି ।



# ନିଃସଂଗ ପଦାତିକ

ସଢ଼ା-ସମାଜର ଦୁର୍ଗନ୍ଧରେ ନାକ ମୋ ଯାଉଛି ଫାଟି
ଉପରେ ହସୁଛି ଗଳିତ-ଆକାଶ, ନିମ୍ନେ ପଚିତା ମାଟି ।
ଗୃହଧାରେ ମୋର ଈର୍ଷାର ନାଗ କୃଷ୍ଣ କୁଟିଳ ଫଣା
ଅଟାଉଛି ତାର ବିଷ-ଫୁତ୍କାର ଫିଙ୍ଗାଇ ଗରଳ ମୁଣା ।
ନିଃସଂଗ ପଦାତିକ
ସାଥୀ ମୋର ଏକା ନଇତିକତାର ଗୁଳିଭରା ବନ୍ଧୁକ ।

ଛଡ଼ାଇନେବାକୁ ହାତରୁ ମୋହର ଏଇ ହତିଆରଟିକୁ
ଉଦ୍ୟତ ବହୁ ଶାଣିତ ଛୁରିକା ଦଂଶୁଛି ମୋର ବୁକୁ ।

ପଡ଼ୁଛି ଲୋଷ୍ଟ୍ର, କୁହା, ନଦା ବର୍ଷିଛି ଶିରେ ଆସି
ଜୀବନ ତମାମ୍ ବାରଂବାର ମୁଁ ହୋଇଅଛି ପଥବାସୀ ।

ଦୁନିଆର ଯେତେ କୀଟ-ପତଂଗ ଏ ମୋ ଆତ୍ମାରେ ତା'ର
ରଖିବାକୁ ନିଜ ସ୍ମୃତିର ଚିହ୍ନ ଦିବାରାତ୍ରି ଉଜାଗର ।

କାଲିର 'ବନ୍ଧୁ' ଆଜି ନିନ୍ଦୁକ, ଆଜି ତା ହାତରେ ଛୁରି
ଏଇ ମୋ ଶୀର୍ଣ୍ଣ ତନୁର ଶୋଣିତ ପିଇବାକୁ ପ୍ରାଣ ଭରି

ଗୃହଦ୍ୱାରଗୁଁ ଆସେ ପିଶାଚର ଦଳ, ଆସଇ ପ୍ରତିହିଂସା
ଆସଇ ଗୁଣ୍ଡା, ଜୁଆଡ଼ି, ଲୋଫର୍, ଆସେ ପୁଣି ଭଣ୍ଡାଟିଆ ।

ଗ୍ରେଗ୍ ମଦଭାଟି ମାଲିକ ଆସଇ, ଆସଇ ପୁଲିସ ଚର
ଆସେ କବି ପୁଣି ଲେଖକ, ଓକିଲ, ଅଧ୍ୟାପକର ଦଳ ।

ଆସଇ ବେଶ୍ୟା, ନର୍ତ୍ତକୀ, ନଟ, ରାଜନୈତିକ ନେତା
ଆସେ ବୁରୋକ୍ରାଟ୍, ମନ୍ତ୍ରୀ, ହାକିମ, କଂଗ୍ରେସ ଓ ଜନତା ।

ଆସେ 'ସି' ପି. ଆଇ., 'ସି'. ପି. ଏମ୍ ପୁଣି ଭୂଦାନୀ, ସର୍ବୋଦୟୀ
ମାତ୍ର ଆସେ ବାକ୍-ବିପ୍ଳବୀ ଥାଟ ହତାଶେ ବେପରୁଆୟୀ ।

ସମାଜ ଜଠରେ ହୁତୁହୁତୁ ଜଳେ ଈର୍ଷାର ହୁତାଶନ :
କେତେ କଥା ହେଲା—ନଥାଇ ଶିକ୍ଷା, ନଥାଇ ଉପାଧି, ଧନ

କିଛି ବି ନଥାଇ ଲଭିଲା ତ ଯଶ, ସମ୍ମାନ ଆଉ ଖ୍ୟାତି
ଆମରି ପାଇଁ କି ଗୁନ୍ଥା ଫୁଲରେ ହୋଇଗଲା ସିଏ ପୋତି !

ପାଠକ ଶ୍ରଦ୍ଧା, ଲୋକପ୍ରିୟତା ପାଇବାଟା ଏତେ ବଡ଼—
ଅନ୍ୟାୟ କଥା, ସେଥି ଠିଆ ହେଲା ଅବରୋଧ, ବାଧା, ବାଡ଼

ସବୁକୁ ଲଂଘି ରବି ସିଂ ନେଲା 'ବିପ୍ଳବୀ କବି' ନାମ
ଯେତେ ବଦ୍‌ନାମ କରାହେଲା ତା'ର ବଢ଼ିଲା ତା ସମ୍ମାନ !

ମାର ତାକୁ ମାର, ଛଡ଼ାଇ ଆଣ ତା କ୍ଷୁଧାର ଅନ୍ନଥାଳି
ବରଂଚ ତାହାର ସୁନାମ ଦେହରେ ବୋଳ କୁହାର କାଳି ।

ଘରଣୀକୁ ତା'ର ଘରୁ ଟାଣି ଆଣ, ପିଲାକୁ ଦିଅ ତା ମାଡ଼
ଲେଖିବାକୁ ତାକୁ ଦିଅନା ସୁଯୋଗ, ଯେଉଁଠି ରହିବ ତଡ଼ !

ଅନାହାରେ ଆଉ ଅନଶନେ ମରୁ ରାସ୍ତାରେ ବୁଲି ବୁଲି
କ୍ଷମା ମାଗୁ ଆସି ଆମ ସବୁରର ପାଦ ଦୁଇହାତେ ଧରି ।

## ସମାଜର ଦରବାରେ

ଏଇ ଯେ ଘୃଣ୍ୟ ଷଡ଼ଯନ୍ତ୍ର ଯୋଜନା ହୋଇଥିଲା ଅଜ୍ଞାତରେ,
ବାରବାର ତାହା ରୂପାୟିତ ସିନା ହୋଇଛି ମୋ ଜୀବନରେ
କିନ୍ତୁ ମୁଁ ଭୁଲିନି, ଭୁଲି ପାରିବିନି ଏଇ ମର ଜନମରେ ।

ସବୁ ସତ୍ତ୍ୱେ ବି କିଣି ପାରିବନି ଏଇ ମୋ କଲମଟିକୁ
ଯେ ଯାଏଁ ଜୀବିତ ଉଗ୍ର ଭାବେ ମୁଁ ସ୍ପନ୍ଦିତ ମୋର ବୁକୁ,
ଏ ଶେଷ ଘୋଷଣା ମୋର
ଶୁଣ ସମାଜର ଶାସକଚକ୍ର, ପ୍ରତିକ୍ରିୟାର ଚର !

ଯାହା ଥିଲା ମୋର ସବୁ ତ ନେଇଛ, ଜୀବନଟା ଅଛି ବାକି
ତା'ବି ନେଇପାର ରେ ବଳଦର୍ପୀ, ତା'ବି ମୁଁ ଯାଉଛି ଲେଖି ।

କିନ୍ତୁ ମୋ ମଥା, ହାତର କଲମ କେବେ ହୋଇବନି ନତ
ପ୍ରଣାମ ନୁହଇ, ପ୍ରାପ୍ୟ ତମର ଅବିରତ ପଦାଘାତ ।

ଯାହାଟା ସତ୍ୟ, ଯାହା ସୁନ୍ଦର ସେଇକଥା ସିନା କହି
କହୁ କହୁ ଯଦି ଶହୀଦ୍ ହେବାକୁ ପଡ଼େ ମୋତେ ସେଥିପାଇଁ,
ଦୁଃଖ ନାହିଁ ମୋ ତିଳେ
ହସି ହସି ହସି ଯାବା ରଚିବ ଜିବ ମୁଁ ଅସ୍ତାଚଳେ ।



ତୁଳସୀପୁର
ତା ୧୩ । ୯ । ୭୮

# ସାବଧାନୀ

ଅମଲାତନ୍ତ୍ର ସ୍ଥାୟୀ ସ୍ୱର୍ଗରେ
ତୁମେ ଯେଉଁମାନେ 'ଇନ୍ଦ୍ର' ଆସନେ ବସି
କରୁଛ ଯାପନ 'ସଚି' ସଙ୍ଗତେ
ରୋମାଂଚକର ପ୍ରୀତି ଇଂଗିତେ
ମଧୁଚନ୍ଦ୍ରିକା ନିଶି,
ଖୋଲି ଦେଇ ତବ 'ଜନତା'ର ମୁଖା
ପଛକୁ ଅନାଅଁ କି ଯେ ବଧୂଷିକା
ତିରିଶ ବର୍ଷ ଧରି,
ପୁଞ୍ଜ ପିଣ୍ଡୁଛି ଇତିହାସ କୂଳେ
କ୍ଷେତେ, ପଥେ, ରଣେ ଶିଖା ଟେକି ଜଳେ
ଅନ୍ତରର ସେହି ବଧୂଷିକା ଫଳେ
ତମକୁ ନେଇଛି ବରି —
ମହାଭାରତର ଏ ମହାଜନତା
କଂକାଳ ପଣ୍ଟୁଆର—
ତମକୁ ଆଣିନି ଡାକି, ଜାଣିରଖ
ସାରିବାକୁ ତା'ର ଜୀବନୁ ସ୍ୱେଚ୍ଛାଚାର ।
ଅତ୍ୟାଚାରୀକୁ ନିକାଲିବା ବେଳେ
ତମେ ଜୁଟିଗଲ ଠିକ୍ ସେତେବେଳେ
ବଦଳାଇ ଦଳ ଗୋଟିଏ ରାତିର ପାଇଁ,

ମଣିଷର  ଆଖି  ଚନ୍ଦ୍ରେ  ତମକୁ
ଶୁଖିନ୍ନ ରକତ ତା'ର କ୍ଷତ ମୁଖୁଁ
ତମେ କାଲି ଥିଲ
                    ଗୋଟିଏ ଦଳରେ ପରା !

ତମେ ତ ତିରିଷ ବର୍ଷର ମଦ
          ଆଜି ତଳ ତଳ
                    ନୂଆ ବୋତଲରେ ପଶି
          ଥିଲ କଂଗ୍ରେସ
                    ହୋଇଛ 'ଜନତା'
          ଯୁଆଡ଼େ ବରଷା
                    ସିଆଡ଼କୁ  ଛତା
          କାଲି ତମେ ସବୁ
                    ବିକିଥିଲ  ମଥା
                         ଦୁର୍ନୀତି ଦରବାରେ,
ଆଜି କେଉଁପରି 'ଦୁର୍ନୀତି ରୋଧ'
                    ତମେ ସବୁ କରିବରେ ?

ପୁରୀ ଯାଉଥିବା ଗାଡ଼ିରେ ବସି କେ
                    ଯାଇପାରେ କଲିକତା ?
ଭୁଲ୍ ବାଟ, ଭୁଲ୍ ନୀତିରେ କେହି କି
                    କୋଟି ମଣିଷର ବ୍ୟଥା—
          ଦୈନ୍ୟ ଦୁରିତ, ଶୋଷଣ କଷଣ
          କରି କି ପାରିଛି କେହି ଅବସାନ ?
          ମାୟା ମରୀଚିକା, ନୂଆ ଧୂଆଁ ବାଣ
                    ଶେଷେ ତା'ର ପରିଣତି,
          ଡାକୁ ଦଳ ଯାଇ
                         ଆସିଲେ ତ ଚୋର
          ଗୁଣ୍ଠୁକାର ଦଳ
                         ପକାଏ ଗୁମର
          ଆଗପରି ଥାଏ
                    ସୁନାବାଡ଼ି, ପାଟଛତି ।

ଭାରତ ଭାଗ୍ୟାକାଶରେ ତ ପୁଣି
ଦୀର୍ଘଶ୍ୱାସର ମେଘ—
ଜମିଲାଣି ଧୀରେ ମଣିଷ ଚିତ୍ତରେ
ହତାଶା ଓ ଉଦ୍‌ବେଗ ।
କଏ ଗଲା, କଏ ଆସିଲା ସେକଥା
ପାରିଲାନି ଜାଣି ଏ ଦେଶ ଜନତା
ଆଗ ପରି ଜଳେ ମଶାଣିର ଚିତା
ଜୀବନ ପଥରେ ତା'ର
ବଜାର ହୋଇଛି ଆହୁରି ତ କଳା
ଫିଟିଲେ କି ହେବ 'ଜରୁରୀ'ର ତାଲା
ଘରର ଲକ୍ଷ୍ମୀ ଛୁଆ ତ ଭୋକିଲା
ଶୁଖିନି ଲୁହର ଧାର ।

ସଚିବାଳୟର ଅମଲା, କିରାଣୀ
ଧଳାହାତୀ ପଲେ ବସି
ଜନତାର କଥା ଭୁଲି ତ ନ ଗଲେ
ମଧୁଚନ୍ଦ୍ରିକା ନଶି—
ଯାପନ କରିବା ନୁହେଁ ସମ୍ଭବ
ଆସିଲେ ଭୋଟ ପୁଣି ଦେଖାଯିବ
'ଉପୋଜନ୍' ପଛେ ଉଡ଼ିଲେ ଉଡ଼ିବ
ଆଜି ତ ସୁଖର ଦିନ
କାଲି ପୁଣି ଦଳ, ବେଶ ବଦଳାଇ
ଗାଡ଼ିକ ଭିତରେ 'ଜନସେବା' ପାଇଁ
କର୍ପୂର ମାରି ଲୋତକ ଗଡ଼ାଇ
ଲଢ଼ିବା ନିର୍ବାଚନ ।

ସାବଧାନ ! ତମେ ଭ୍ରୋଅଷ୍ଟବେପାଖି
ଏପାରି-ସେପାରି ଦଳ,
ନୋଅଷ୍ଟ ଭେଳାରେ ପଙ୍ଗୁ ଭାବନା
ଲଂଘିବ ହିମାଚଳ ।

ତମ ଅଜାଣତେ ଜମୁଛି ତୋଫାନ
ବେଳ ଥାଉ ଥାଉ ହୁଅ ସାବଧାନ
ଦୋହଲିବ ପୁଣି ନଦୀ, ଗିରି, ବନ
ବିଶାଳ ଭାରତ ଭୂମି,
ଗୃହଯୁଦ୍ଧର ଖ୍ରୀମ ଦାବାନଳ
ସବୁ ଜାଳି ଦେବ କରି ଛାରଖାର
ଜନ-ଯମୁନାରେ ଆସିବ ଜୁଆର
ଇଏ ତା'ର ସାବଧାନୀ ।



# ଠିକଣା

ଠିକଣା ତ ନାହିଁ ମୋର,
ବହୁକାଳ ପରେ ଠିକଣା ହରାଇ କବି ମୁଁ ବିଦ୍ରୋହୀର
ପୃଥିବୀର ମହା ଘୂର୍ଣ୍ଣନ ସାଥେ ଘୂରୁଅଛି ଅବିରତ
ତନୁ ମନ ମୋର ରକ୍ତସିକ୍ତ, ପଥଟା କଣ୍ଟକିତ ।
ସତ୍ୟର ସେବା ପାଇଁ
ସାଧନାବେଦ୍ଧ ମୋ ବିପର୍ଯ୍ୟସ୍ତ, ଠିକଣା ମୋ ନାହିଁ ନାହିଁ ।

ଦେହର ପ୍ରତିଟି ପଞ୍ଜରା ହାଡ଼ ମିଥ୍ୟାର କଷାଘାତେ
ବାରବାର ଚୂନା ହୋଇଛି, ହେଉଛି ପୃଥିବୀର ପଥେ ପଥେ ।

ଆଇନ ନୀରବ, ମଣିଷ ବି ମୂକ, ଶାସନ ବଧିର ଆଜ
ଭୀରୁ ଭୀରୁତର ଶିରା-ପ୍ରଶିରାରେ ଆସ୍ଥାନ ଗଢ଼େ ନାଜି ।

ଗୃହଦ୍ୱାରେ ଆଜ ଭୀତି, ଆତଂକ, ବିପନ୍ନ ନିରାପତ୍ତା
ହାହାକାର କରେ ମଣିଷପଣିଆ, ଗଣତନ୍ତ୍ରର ସତ୍ତା ।

ଏତିକି ବେଳେ ମୋ ଠିକଣା ଯାଇଛି ହଜି
କେଉଁଠି ଅଛି ମୁଁ, ମୋତେ ଜଣାନାହିଁ, ମୁହିଁ ମୋ ନିଜକୁ ଖୋଜି—

ବୁଲୁଛି ନୀରବେ, ତଥାପି ପାଉନି କେଉଁଠି ଠିକଣା ମୋର
ଠିକଣା ଖୋଜେ ମୋ ନ୍ୟସ୍ତସ୍ୱାର୍ଥ, ଖାକୀକୁର୍ତ୍ତାର ଚର ।

ବେଲ୍‌ବଟମ୍ ଓ ନଲପେଣ୍ଟ ତଳେ ଗଲା ମୋତେ ଖୋଜିବୁଲେ
ଗୁଣ୍ଡା ଲୋଫର, ଭଡ଼ାଟିଆ, ଭଣ୍ଟ ସହରେ ଓ ମଫସଲେ ।

କାହିଁ ଗଲ ମୁହିଁ, କେଉଁଠି ରହିଲି, କାହିଁ ଆଶ୍ରୟ ଥିଲା ?
ଚାଖିବାକୁ ମୋର ରକ୍ତର ସ୍ୱାଦ ନାଗର ଜିଭରୁ ନାଳ—

ଗଡ଼େ ଅବିରତ ଦିବସରାତି, ଠିକଣା ମୋ ହୁଏ ଖୋଜା
ମୋତେ ପଦାନତ କରି ତ ନପାରି ଗଲେଣି ଯେ କେତେ ରାଜା !

ବାର ବାର ମୋର ହାତରୁ କଲମ ଛଡ଼ାଇ ନେଇଛି ନାଗ
ଆତ୍ମଗୋପନ, କାରାଗହ୍ୱର, ବନ୍ଧୁ ବନ୍ଧ କବାଟ—

ଭୋଗିଛି, ଭୋଗୁଛି, ଜୀବନତମାମ୍ ଭୋଗିବାକୁ ହେବ ମୋତେ
ଲଢ଼ିବାକୁ ହେବ, ହାରିବାକୁ ହେବ, ଜିତିବାକୁ ହେବ ପଥେ ।

ମୋର ଚେତନାର ରକ୍ତମଶାଲୁଁ ଜଳୁଛି ନଭିଛି ନିଆଁ
ବହୁତ ଫାସିଷ୍ଟ ଜିରାଫ୍ ଗ୍ରୀବାରେ ଆଘାତ ହାଣିଛି ବାହା ।

ରକ୍ତ ନେଇଛି, ରକ୍ତ ଦେଇଛି ଆପଣାର କ୍ଷତ ମୁଖୁଁ
ପୁରୁଣା ଶ୍ରେଣୀକୁ ପଛରେ ପକାଇ ଆଗରେ ଭେଟିଛି ତାକୁ ।

କଲମରେ ମୋର ଆଖିର ଲୋତକ, ଗୁଡ଼ାର ରକତ ଭରି
ରଚନା କରୁଛି କଠୋର କଳା ମୁଁ ଆଜୀବନ ପଥଚାରୀ ।

ଫଳରେ ଉଠିଛି ହତାଶାର ମେଘ ନାଗର ଶିବର ପରେ
ଷଡ଼ଯନ୍ତ୍ରର ରଚନା ହୋଇଛି ଜାଲ ଅତି ସୁଚତୁରେ ।

ମନର ପଶୁଟା ବନପଶୁ ରୂପେ ଛାଡ଼ି ଅରଣ୍ୟ ଗୁହା—
ବାହାରି ଆସିଛି ହୋଇ ଉଲଂଗ, ହୋଇଛି ମରଣ ମୁହାଁ ।

ନାରାୟଣୀ ସେନା, ବାରଣ' ବଢ଼େଇ, ଦୁର୍ମତି କୌରବ
ରଥ, ଗଡ଼ ଆଉ ଅଶ୍ୱ, ବେଶ୍ୟା, ଅର୍ଥ ଯା ଗୌରବ ;

ଅଭିମନ୍ୟୁ ଓ ଧର୍ମପଦର ସଖା ମୋ ସେଥିପାଇଁ
ହରାଇ ବସିଛି ନିଜର ଠିକଣା, ଠିକଣା ମୋ ନାହିଁ ନାହିଁ ।

ମୋତେ ଖୋଜ ତମେ ସାଥୀ ଓ ବନ୍ଧୁ, ଶତ୍ରୁ, ଗୁପ୍ତଚର
ସେକଥା ମୁଁ ଜାଣେ, କିନ୍ତୁ ତମେ ତ ଜାଣନା ଠିକଣା ମୋର !

ଠିକଣା ମୋ ଅଛି ନୀଳାକାଶ ତଳେ ଅଭାବ ଓ କ୍ଷୁଧାପାଶେ
ରୋଗଶଯ୍ୟା ଓ ପଥର ପ୍ରାନ୍ତେ, ମାନବ ଦୀର୍ଘଶ୍ୱାସେ ।

କଳାମେଘ ଦେହେ ଲେଖା ମୋ ଠିକଣା, ରକ୍ତନଦୀର ମୋଡ଼େ
ଆଗାମୀର ମହା ବିଦ୍ରୋହ ଆଉ ଜନଯୁଦ୍ଧର ଝଡ଼େ ।

ଅନାହାର ଆଉ ଅନଶନ ପୁଣି ଧର୍ମଘଟର ଦେହେ
ଅସନ୍ତୋଷର ଧୂସର କେତନେ, ଦଳିତର ଆଖିଲୁହେ ।

ଠିକଣା ମୋ ଜାଣେ ଭୂମିଗର୍ଭର ଚକଟା ଅନ୍ଧକାର,
ମଶାଣିର ମଡ଼ା, ଚିତାଗ୍ନି ଶିଖା, ଶିଶୁ କ୍ରନ୍ଦନ ରୋଳ ।

ସୂର୍ଯ୍ୟାସ୍ତର ବନେ, ଦିନ ଶେଷେ, ଉଷାର ଆଲୋକ ଦେହେ,
କାରାଅର୍ଗଳେ, ଫାଶୀର ମଞ୍ଚେ, ପ୍ରାଣର ପ୍ରଖର ସୁଏ ।

ପବନର ପ୍ରତି ରନ୍ଧ୍ର ଭିତରେ ଠିକଣା ମୋ ଅଛି ଲେଖା
ଠିକଣାଟା ମୋର ଯେତେ ସୁନ୍ଦର, ସେତିକି ତ ବିଭୀଷିକା ।
ଖୋଜ ନାହିଁ ତାକୁ ବୃଥା,
ଖୋଜିଲେ ତ ତାହା ମିଳିବନି ଜମା, ଯେଉଁଦିନ ଆଗାମୀ କାଲି—

ଭେଟିବ ବନ୍ଧୁ, ସାଥୀ, ସହୋଦର, ସେଦିନ ହୁଏତ ଟିକେ
ପକାଇବ ମନେ ଏ କବିର କଥା ଅବସର ବେଳେ ଟିକେ ।

ହେ ମୋ ବନ୍ଧୁକ, ଶତ୍ରୁର ଦଳ, ନବ୍ୟ-ନାଜୀର ଆଟ,
ସେହି ଅନାଗତ ଆଗାମୀକାଲରେ ନଥିବ ତମର ନାଟ ।

ତମେ ସଢ଼ୁଥିବ କାରାଗହ୍ୱରେ, ଅଥବା ନ ଥିବ ଜୀଇ
ତେଣୁ ତମ ପାଇଁ ଆଜ ଏ କବିର କିଛି ସନ୍ଦେଶ ନାହିଁ ।

ଆଜ ବା ନହେଲେ କାଲି ତ ଆସିବ ନଷ୍ଟେଁ ଠିକଣା ଧନ
ଅପମାନ ଆଉ ପୁଷ୍ପମାଲ୍ୟ ଭିତରେ ଯେ ସଂଗ୍ରାମ,

ହେଲାବେଳେ ଶେଷ ତାଜା ଫୁଲହାର ଖୋଜିବ ମୋ ଗଳା କାହିଁ ?
ମୁଁ ସେବେ ନଥିବି, ଥିବ ମୋ ଶିଳ୍ପ, ଇତିହାସ ଥିବ ରହି ।

ବନ୍ଦ କର ମୋ ଠିକଣା ଖୋଜିବା ସାବଧାନ, ନିବେଦନ !
ଅଜ୍ଞାତ ବସେ ଅଛି ପାଣ୍ଡବ, ହୋଇନାହିଁ ଅବସାନ—

ଅତ୍ୟାଗ୍ରହର ଘନ-କଳାଗ୍ରତ, ଜଳୁଛି ଜତୁଗୃହ
ଠିକଣା ଧନରେ ଦେଖାହେବ ମୋର, ଠିକଣା ମିଳିବ ରୁହ ।



( ଆକାଶବାଣୀ, କଟକଙ୍କ ସୌଜନ୍ୟରୁ )

ତୁଳସୀପୁର, କଟକ
ତା ୧ । ୧୦ । ୭୮

# କମିଶନ

କମିଶନ, କମିଶନ, ରିମିସନ୍ ହୋଇନାହିଁ କିଛି
କମିଶନ ବସିଗଲେ ମରନ୍ତିକ ମଶା ଆଉ ମାଛି ?
କମିଶନ କାମୁଡ଼ିଲେ ଦେହେ ମୋଟେ ଘାଆ ନାହିଁ ହୁଏ
ବଡ଼େ ଯଶ, ନାମ, ଖ୍ୟାତି ଭୋଗିଥିବା ଲୋକ ଆସି କୁହେ ।
"ଖାଆନା କମିଶନ୍" ବସି ଖାଇବାଟା ବନ୍ଦ ହୋଇନାହିଁ
ବିକ୍ ହୋଇଅଛି ଖ୍ୟାତ ସେ "ଖାଆନା କମିଶନ" ପାଇଁ ।
ସିଏ ଗଲେ ସେ ବସାଏ; ଇଏ ଗଲେ କମିଶନ ସିଏ
କମିଶନ୍ ବସାବସି ଏ ଦେଶରେ ସଦା ଚାଲିଥାଏ ।
କମିଶନ ଭୁଲେ କେବେଁ କାହାକୁ ତ ଦେଇନାହିଁ କଳା
ଚାଲିଅଛି ଏ ଦେଶରେ ହରଦମ୍ କମିଶନ ଲୀଳା ।

କମିଶନ, କମିଶନ, ରିମିସନ୍ ହେଉନାହିଁ ଜର
ବଜାରର ଦର ଚଢ଼ା, ନାଲିଫିତା ସରକାରୀ କାଗଜ ପତର—
କହୁଛି, "କମିଛି ଦର" ହୋଇଯିବ ସବୁ ଠିକ୍‌ଠାକ୍
ଶୁଣି ତା 'କବିତ୍ୱ' ମୋର ବନିଯାଏ ଯଥା 'ବୁଡ଼୍‌ବକ୍' ।

ଜନତା ଧରିଛି ଆଜ ଭାରତରେ କମିଶନ-ଭାଲୁ
ରିମିସନ୍ ହେଉନାହିଁ ତେବେ ବି ତ ଦୁର୍ମତିର ଗଲୁ ।
ନାହିଁ ତ ଉପାୟ କିଛି, ହରିବୋଲ ଦିଅ ନଗ୍ରଜନ
କମିଶନ; କମିଶନ କାନ ଶୁଣୁ, ଦେଖୁ ଏ ନୟନ ।
ତାହା ପରେ ଆସୁ ଭୋଟ୍ ଖସ୍ ଖସ୍ ଧର ମାଲ୍ ପାଣି
ସବୁକାମେ ଦରକାର ହେଉଥାଉ ସଦା କମିଶମ୍ମା ।





# ମହାଯାତ୍ରା

[ଗତ ୧୯୭୮ ମସିହା ଜାନୁଆରୀ ମାସରେ ରାଜଧାନୀ ଭୁବନେଶ୍ୱରରେ ଜଣେ ଘୋର ବୃଦ୍ଧା ତା'ର ଏକମାତ୍ର ପୁଅ, ଯିଏକି ଜଣେ ସରକାରୀ କର୍ମଚାରୀ, ତାଙ୍କୁ ଖୋଜିବା ପାଇଁ ଆସି ହାଜର ହୋଇଥିଲା । ପୁଅର ନାମ କହୁଥିଲେ ବି ସେ କେଉଁ ବିଭାଗରେ କାମ କରେ ସେକଥା କହିପାରୁ ନଥିଲା । ରାଜଧାନୀ ପୁଲିସ ତାଙ୍କୁ ସନ୍ତାନସୁଲଭ ବ୍ୟବହାର କରି ଥାନାରେ ତା'ର ରହିବାର ବନ୍ଦୋବସ୍ତ କରିଥିଲେ । ଏଇ ଘଟଣା ହେଲା କବିତାର ପୃଷ୍ଠଭୂମି ।—ଲେଖକ ।]

ବୁଢ଼ୀର କିଏ ମାଲିକ ମୋଟେ ପଡ଼ିଲା ନାହିଁ ଜଣା,
ରାଜଧାନୀର ପୁଲିସିବାବୁ ପେଡ଼ିଲେ ବହେ ଘଣା ।
ଆସିଛି ବୁଢ଼ୀ ପୁଅକୁ ଖୋଜି, ଚାକିରୀ କରେ ପୁଅ,
ପାଉନି ବାଟ, ପୁଅ ଠିକଣା, କୁହରେ ବାପ କୁହ !

କିଏ କହିବ ପୁଅ ଠିକଣା ? କେଉଁ ଅଫିସେ କାମ—
କରୁଛି ସିଏ, କହିଲେ ସିନା ପଚୁର ତା'ର ନାମ—
ବୁଝିବେ ଲୋକ, କିନ୍ତୁ ବୁଢ଼ୀ ଅଫିସ ଜାଣି ନାହିଁ
ବୁଲୁଛି ବୁଢ଼ୀ ରାଜଧାନୀରେ ପୁଅ ତା କାହିଁ କାହିଁ ?

ଥରୁଛି ବୁଢ଼ୀ ଜରାର ଝଡ଼େ ଥରୁଛି ଥରଥର
ପୁରୁଣାକାଳ ମଣିଷ ସିଏ, ଜାଣେନା ହେର୍‌ଫେର୍ ।
ଆସଇ ନିଭି ଆଖିର ମଣି, ନଇଁ ପଡ଼ୁଛି କଟି
ଦାନ୍ତ ନାହିଁ ଗୋଟିଏ ବୋଲି ପାକୁଆ ପୁରା ପାଟି ।

ପୁଲିସି ବାବୁ ଦେଖିଲେ ତାଙ୍କୁ ରାଜମହଲ ଛକେ
କାନ୍ଦେ ବୁଢ଼ୀ ବିକଳ ହୋଇ, ଯାହାକୁ ପାରେ ଡାକେ ।
ପଥିକ ଯାଏ ପଥରେ ଚାଲି, ସନ୍ଧ୍ୟା ଆସେ ନଇଁ
ରାସ୍ତାଧାରେ ତରୁଣୀଦଳ ପଙ୍କଜମା, କଇଁ,

ସେବନ୍ତୀ, ଯୂଈ, ପ୍ରମିଳା, ରମା, ଷୋଡ଼ଶୀ ବଧୂଦଳ
ଯା'ନ୍ତି ଚାଲି ବାଞ୍ଛ ହସ ଅନ୍ତର ଭରଭର ।
ବୁଢ଼ୀକୁ କା'ର ନଜର ନାହିଁ, ଆସୁଛି ରାତି ମାଡ଼ି
ରାସ୍ତାକଡ଼େ ବସିଛି ବୁଢ଼ୀ ହାତରେ ଏକ. ବାଡ଼ି ।

ରିକ୍‌ସା ଡାକି ବସାଇ ତାଙ୍କୁ ଥାନାକୁ ନେଲେ ବାବୁ
ପୁଅର ନାଁ କହିଲା 'ହରି' ଶୁଣିତ ଗଲେ ସବୁ ।
ଥାନାରେ ଯେତେ ଥିଲେ ତ ବସି ପୁଲିସି ଲୋକମାନେ
ସରକାରର କର୍ମଚାରୀ କୋଉଠି 'ହରି' ନାମେ—

କୋଉ ଅଫିସେ କରୁଛି କାମ—ଚାଲିଲା ନିତି ଖୋଜା
ବୁଢ଼ୀକୁ ଦେଲେ କମଳ, ଗଦି ଥାନାର ବଡ଼ରଜା ।
ଆଦର, ସ୍ନେହ, କଅଁଳ କଥା ଥାନାରେ ନୂଆ କଥା
ସେଇ କଥାକୁ ଭାବିଲା ବୁଢ଼ୀ, ଘୂରାଇ ଦେଲା ମଥା ।

ଚଉଦିଗେ ପ୍ରଚାର ହେଲା ଥାନାରେ ଜଣେ ବୁଢ଼ୀ—
ରହିଛି ଆସି, ପୁଅର ନାମ ଅଟଇ ତା'ର 'ହରି' ।
ସରକାରର କର୍ମଚାରୀ ଯଦି କେ ଅଛ କାହିଁ
ମାଆକୁ ତମ ନେଇ ତ ଯାଅ, ଥାନାରେ ଅଛି ରହି ।

କେହିବି ଆସି ବୁଢ଼ୀକୁ ଦିନେ ଡାକିଲେ ନାହିଁ, "ମା !
ଖୋଜୁଛୁ ମୋତେ ? ଆସିଛି ମୁଁ ତ, ଆ' ଲୋ ଚାଲି ଆ !"
ରାତି ପାହେ, ସକାଳ ହୁଏ, ସନ୍ଧ୍ୟା ଆସେ ନଇଁ
ଥାନାରେ ବସି ଭାବଇ ବୁଢ଼ୀ, "ପୁଅ ମୋ ଅଛି କାହିଁ ?"

ପୃଥିବୀ ଆଜି ଯନ୍ତ୍ରବତ, ଯାନ୍ତ୍ରିକତା ଭରା
ପଛକୁ କେହି ଚାହେନା ଫେରି, ଗତିର ବେଗ ପରା ।
ଭାବିଲା ବୁଢ଼ୀ କୁଆଡ଼େ ଯିବ ? ଆସିଲା ନାହିଁ ହରି
ଆଉ ଗୋଟିଏ ପୁଅ ମୋ ଅଛି, 'ମରଣ' ନାମ ତା'ର ।

ପାଖକୁ ତା'ର ଯିବ ମୁଁ ଚାଲି, ରହିବ ନାହିଁ ଏଠି
କଷ୍ଟକରି ଉଠିଲା ବୁଢ଼ୀ ହାତରେ ଧରି ଲାଠି ।
"ଯାଉଛ କାହିଁ ମାଉସୀ ତମେ ?" ପୁଚ୍ଛିଲେ ଥାନା ବାବୁ
କହିଲା ବୁଢ଼ୀ, "ପଡ଼ିଲା ମନେ ଏତେବେଳେ ମୋ ସବୁ ।

ଆଉ ଗୋଟିଏ ପୁଅ ମୋ ଅଛି, ଯାଉଛି ପାଶେ ତା'ର"
ପୁଲିସବାବୁ ପ୍ରଶ୍ନ କଲେ, "କୋଉଠି ତାର ଘର ?"

ମୂରୁକ ହସି ଖସିଲା ବୁଢ଼ୀ ପାହାଚ ତଳେ ହାୟ
ପଡ଼ିଲା ଦୂରେ ବାଡ଼ିଟା ତା'ର ଦୃଶ୍ୟ ଅତିଶୟ—
କରୁଣ ହେଲା, ଜମିଲେ ଲୋକ, ବୁଢ଼ୀତ ଗଲା ଚାଲି
ପାଇଲା ସିଏ ପୁଅର ଦେଖା ଅଦେଖା ପୁଅ ତା'ର ।

ମାର୍ଚ୍ଚ ୧୯୭୮



# ସ୍ୱର୍ଗ ଦର୍ଶନ

ଖାଇ ଥାଉ ଥାଉ ଦେଖିବାକୁ ହେଲେ ସ୍ୱର୍ଗ
ରାଜଧାନୀ ବୁକେ ସଚିବାଳୟକୁ ଦେଖ !
ନଳପେଣ୍ଟ ବାଲା, ଲମ୍ବାକଳଆ ବର୍ଗ
ଡ଼ିଲ୍ ପଞ୍ଜାବୀ ବହୁତ ଧର୍ମବକ ।

ଫାଇଲ ତ ଖାଲି ମାଇଲ ମାଇଲ ଧରି
ଯା ଭିତରେ ଅଛି ସାରା ଓଡ଼ିଶାର ଚୂଟି ।
ଓଡ଼ିଶା-ନରକେ ଇଏତ 'ସ୍ୱର୍ଗପୁରୀ'
କର ଯାକୁ ଦେଖି ନେନ୍ତ ପବିତ୍ରି ।

ଏଇ 'ସ୍ୱର୍ଗ'ର 'ଇନ୍ଦ୍ର' ଯଦିଓ ମନ୍ତ୍ରୀ
ଗୃକରୀ ଯାଙ୍କ ଅଶ୍ରବ ଚୈତ୍ରରାତ୍ର,
ଅସଲ ମାଲିକ ହେଲେ ତ ଅମଲାତନ୍ତ୍ରୀ
ନାଲିଫିତା ତଳେ ଥା'ନ୍ତି ଯିଏ ତ ଗଳା ।

ହଜାର ହଜାର ଟଙ୍କା ଦରମା ପାଇ
ଧଳାହାତୀପଲ ଏଇମାନେ ହେଲେ 'ଶଚି'
ମନ୍ତ୍ରୀ ତ ଯିବେ, ଯାଙ୍କ ଗୃକରୀ ସ୍ଥାୟୀ
ଯାଙ୍କର ହାତେ ସବୁ ଗୃବକାଠି ଅଛି ।

ଆଇ. ଏ. ଏସ୍. ଯେ 'ଶଚି' ମାନଙ୍କୁ ଖୁସି
ନକଲେ ମନ୍ତ୍ରୀ-ଇନ୍ଦ୍ର ଯେ ବଦ୍‌ନାମ୍,
ପାଞ୍ଚବରଷ ପରେ ଯିବେ ସବୁ ଖସି
ବଳ ନଥିଲେ ବି କରିବାକୁ ହେବ ପ୍ରେମ !

ଅଗ୍ନିବେଦ ୩୬ ॥

ସେହି ପ୍ରଣୟରୁ ଜନମିବ ଦୁର୍ନୀତି
ପ୍ରସବ ହୋଇବ କଳାଟଙ୍କାର ବଢ଼ା,
ମନ୍ତ୍ରୀପଦର ସୁନାବାଡ଼ି, ପାଟଛତି
ତାହେଲେ ରହିବ ଚିରଦିନ ପାଇଁ ଖାଡ଼ା ।

ଚଳିଲେ 'ଇନ୍ଦ୍ର' 'ଶଚି'ର ମର୍ଜି ଜଗି
ସୃଜିବାକୁ ହେବ ସଠତାର ମାୟାଜାଲ,
ହେବାକୁ ପଡ଼ିବ ଦମନର ଅନୁରାଗୀ
କାନ ଥାଉ ଥାଉ ହେବାକୁ ପଡ଼ିବ କାଲ ।

କରିବାକୁ ହେବ ଲାଠି ଗୁଳି ବରଷଣ
ଶ୍ରମିକ, କୃଷୀର ବିକ୍ଷୋଭ-ପଟୁଆରେ,
ବସାଇ ଟିକସ, ପୀଡ଼ନରେ ନେଇ ପ୍ରାଣ
ଗସ୍ତ କରିବ ପୁଲିସର ପହରାରେ ।

ଧାନ ଓଡ଼ିଶାର ନର-କଙ୍କାଳ ଦଳ !
ନମରି ଥରେ ଏ 'ସ୍ୱର୍ଗଭୂବନ' ଦେଖ !
ଗୁଞ୍ଜନ କରି ଗୁଳିଛି ଶାସନ କଳ
ତୁମକୁ ଦିଏ ଯେ ଜୀବନ ତମାମ ମେଖ ।

ତମରି ଝାଳ ଓ ତମରି ରକତେ ଭାଇ !
ଏଠି ନୂଆ ନୂଆ ମଟର ଗାଡ଼ିର ଡେଉ,
ତମ ପେଟେ ଆଜ ଭାତମୁଠେ ପଡ଼ୁନାହିଁ
କଂଗ୍ରେସ ପରେ ଫଳିଛି 'ଜନତା' ଲାଉ ।

ଏଇ ଏ 'ସ୍ୱର୍ଗ ଭୁବନ' ଦୁଆରୁ ଫେରି
କ୍ଷେତେ, ପଥେ, ରଣେ ଶକ୍ତ କରରେ ବାନ୍ଧ,
ଯୋଗାଡ଼ ନକଲେ ଲଢ଼ାଇର ହତିଆର
ବଞ୍ଚିବୁ ନାହିଁ ସର୍ବହରା ତୁ ଆନ୍ଧ !!



ତା ୧୫ । ୧୨ । ୭୭

# ତା'ର ଆଉ ମୋ'ର

ବାହାରେ ହତଶ୍ରୀ ହିମ
ରାତି କନ୍ତୁ ବେଶି ନାହିଁ
ତଥାପି ବହୁତ ସ୍ୱପ୍ନ
ବାକ ଅଛି ।

ଦୂରାଗତ ବଂଶୀର ବେହାଗ ପରି
ନକ୍ଷତ୍ରଙ୍କୁ ଏକ ଚକ୍ରବାକୀ
କାନ୍ଦଇ ଏକାକୀ
ତା'ର ବ ରହିଛି ବାକ
ବହୁ ସ୍ୱପ୍ନ
ରାତି କନ୍ତୁ ଦ୍ରୁତ ସର ଆସେ ॥

ରାତି କନ୍ତୁ ବେଶି ନାହିଁ
ଝରକା, କବାଟ ସବୁ ବନ୍ଦ ।

ନଶାନ୍ତର କୁଆଁ ତାରା
ଉଠିଥିବ ଅତ୍ୟନ୍ତ ଉଜ୍ଜ୍ୱଳ
ଉଠୁ ।
ବହଂଗମାନଙ୍କର ନଦ ଭାଙ୍ଗି ବଣି
ଭାଙ୍ଗୁ ।
ରାତି ପାହୁଛି—ପାହୁ ।
ମୋର କନ୍ତୁ ସ୍ୱପ୍ନ ସରନାହିଁ ॥

ରାତି ପାହିଗଲେ ହିଁ
ମୁଁ ମୋର ସ୍ୱପ୍ନ ଅଲ୍‌ବତ୍ ଦେଖିବି ।

ମୋ ସ୍ୱପ୍ନର ରାତି
ଏତେ ଶୀଘ୍ର ପାହି ପାରେନା ।

ସମାଜର ଆମୂଳ ପରିବର୍ତ୍ତନ,
ମେହନତି ମଣିଷର ରଣ-ଉତ୍ସବ
ଦେଖିବାକୁ ମୋର ଆୟୁଷ ନାହିଁ
ନଥାଉ ।

ଆଗାମୀର ବଂଶଧର
ତାହା ଦେଖିବ ।

ଉପଲବ୍ଧି କରିବ
ମୋ ଜୀବନ ବ୍ୟାପୀ ସ୍ୱପ୍ନର ବାସ୍ତବତା ।

ଏ ପୃଥିବୀ ତା'ର ଆଉ ମୋ'ର
ପରିଶେଷରେ ସାରା ଦୁନିଆଟାହିଁ ତା'ର ।



ରାଜାବଗିଚା, କଟକ
ତା । ୧୧ । ୧୧ । ୭୭

# ପଥିକ

ଜୀବନ ସାରା ତ ଅନ୍ୟାୟ ଅତ୍ୟାଚାର
ପ୍ରତିବାଦ ଆମେ କରି କରି ଗଲୁ ଚାଲି,
ସେଥିପାଇଁ ଆମ କୁଟୀର ଅନ୍ଧକାର
ଅଜଳା ରହିଲା ରୋଷେଇ ଘରର ଚୁଲି ।

ଘରର ଲକ୍ଷ୍ମୀ ଲାଜ ଢାଙ୍କିବା ପାଇଁ
ଦେଇ ପାରିଲୁନି ବସନ ଖଣ୍ଡେ ତାଙ୍କୁ,
ବାଧକା ଛୁଆର ପାଇଁ ଔଷଧ ନାହିଁ
ହସ ଲିଭିଅଛି ଆମ ପରିବାର ମୁଖୁଁ ।

ଆଗାମୀ ପୁରୁଷ ପାଇଁ ରଖିଗଲୁ ଆମେ
ହତାଶା, ଆତ୍ମହତ୍ୟାର ସମ୍ପଦ,
ରଖିଗଲୁ ଥାନା, ଗାରଦ ତାଙ୍କ ନାମେ
ବେକାରି, କଷଣ, ଶୋଷଣର ସମ୍ବାଦ ।

ଶିଶୁ ପୁଅକୁ କରିଗଲୁ ଶୃଙ୍ଖଳବଦ୍ଧ
'ଶିକ୍ଷା' ନାମରେ ଅଶିକ୍ଷା ଗଲୁ ଦେଇ,
ଆମ ଜୀବନରେ ସଫଳତ ନାହିଁ ଯୁଦ୍ଧ
ଦେଖିଗଲୁ ସ୍ୱପ୍ନ, ରାତି ଅଣ୍ଟିଲା ନାହିଁ ।

ଆଲୋକ ବଦଳେ ଜାଳିଗଲୁ ଆମେ ଚିତା
ସେଇ ଚିତାନଳେ ଆମେ ଶେଷେ ଦେଲୁ ଲମ୍ଫ,
ଜୀବନେ ଧନେ ବ ନତ କରିନାହୁଁ ମଥା
ସତ କଥା କହି ଆଣିଅଛୁ ଭୂମିକମ୍ପ ।

ଆମର ଲଢ଼ାଇ, ଆମ ସଂଗ୍ରାମୁ ତମେ
ଫାଇଦା ହାସଲ କରିଛ ମୁଷ୍ଟିମେୟ,
ସାଧୁ ଓ ସନ୍ଥ, ଜ୍ଞାମୀ ଓ ମାମର ନାମେ
ଘଟାଇଛ ଆମ ଜୀବନର ପରାଜୟ ।

ତମେ ଇତିହାସ ଅନ୍ଧଆଗଦାର କୀଟ
ଆମେ ଭୁଲିଗଲୁ ତମକୁ ନଦେଇ କ୍ଷମା,
ବଣିନେବେ ବନ୍ଧୁ ଆମର ଜୀବନ ବାଟ
ମାନିନେବେ ନାହିଁ ତମର ହୁକୁମନାମା ।



ତା ୨୯ । ୧୧ । ୭୭

## * ତମେ ବି ସଜାଗ ରୁହ

॥ ୧ ॥

ପେଟ୍ରୋଲିୟମ୍ ପ୍ରଡ଼କ୍ଟ ପରି
ତମେ ସବୁ କଂଗ୍ରେସୀୟମ୍ ପ୍ରଡ଼କ୍ଟ ।

ଏକା ମା' ପେଟର
ଏକା ନାହି ଦୁଇଖଣ୍ଡ
ଗୋଟିଏ ବୃନ୍ତର ଦୁଇଟି କୁସୁମ,
ଏକା ନାଉର ମଞ୍ଜି ;
ନିକଟରେ ଭିନେ ହୋଇଛ
ତମେ ।

ତମେ ସବୁ ଦୁର୍ଘଟଣା ବଶତଃ
ଆସି ଯାଇଛ କ୍ଷମତାକୁ ।

ଭଲକଥା । ଆସିଛ, ଭଲ କରିଛ ।
ତମେ ଦୀର୍ଘାୟୁ ହୁଅ
ବଞ୍ଚି ରୁହ ।
ମୁଁ ତମକୁ ସ୍ୱାଗତ କରେ
କରେ ଆଶୀର୍ବାଦ
ଦୀର୍ଘ ଜୀବନ କାମନା କରେ ତମର ।

ତମ ଭିତରେ ଅନ୍ତର୍ଦ୍ୱନ୍ଦ୍ୱ ଦେଖା ଦେବ
ଦେଇଛୁ, ଦେବାଟା ଅନିବାର୍ଯ୍ୟ ।
ଯଦି ଦେଖା ନଦିଏ
ତାହେଲେ ଭୁଲ୍ ପ୍ରମାଣିତ ହେବ
ବୈଜ୍ଞାନିକ ସମାଜତନ୍ତ୍ରବାଦ ।

॥ ୨ ॥

ଆମେ ଯେଉଁମାନେ
ବିପ୍ଳବରେ ବିଶ୍ୱାସ କରୁ,
ବିଶ୍ୱାସ କରୁ ସମାଜର ଆମୂଳ ପରିବର୍ତ୍ତନରେ
ଏବଂ ବୈପ୍ଳବିକ ହିଂସାରେ
ସେଇଥି ପାଇଁ ତ ଆମେ ମରୁ,
ଉଚ୍ଛନ୍ନ ହେଉ,
ଲଢ଼ୁ, ହାରୁ, ପୁନର୍ବାର ଲଢ଼ୁ :
ଅନ୍ତିମ ବିଜୟ ପର୍ଯ୍ୟନ୍ତ !
ଦ୍ୱନ୍ଦ୍ୱାତ୍ମକ ପଦ୍ଧତିରେ ।

ଯେ ପର୍ଯ୍ୟନ୍ତ ସମାଜର ମୂଳ ଉତ୍ପାଦିକା ଶକ୍ତି
ଅଗଣିତ ମେହନତି ମଣିଷ
ପାଇ ନାହାନ୍ତି ସଠିକ୍ ରାଜନୀତି,
ହୋଇ ନାହାନ୍ତି ସଙ୍ଗଠିତ,
ଗଢ଼ି ନାହାନ୍ତି ନିଜସ୍ୱ ବିପ୍ଳବୀ ଦଳ
ସେ ପର୍ଯ୍ୟନ୍ତ ତମେ କ୍ଷମତାରେ ଥାଅ,
ଖାଅ, ପିଅ, ଫୁର୍ତ୍ତି କର—କ୍ଷତି ନାହିଁ ।
ଫ୍ୟାସିବାଦ, ସାମରିକ ଏକଛତ୍ରବାଦ ଅପେକ୍ଷା
ତମେ ଆମ ପକ୍ଷରେ କମ୍ ବିପଜ୍ଜନକ ।

ଦରଦାମ ବଢ଼ୁ ପଛେ ହୁ ହୁ
ଦୁର୍ନୀତି, କରଭାର, ଦୁର୍ଭିକ୍ଷ, ମହାମାରୀ,
ବନ୍ୟା ଆଉ ବାତ୍ୟାରେ

ପଡ଼ିଛି ଉଚ୍ଛନ୍ନ ହେଉ
ଗାଁ ପରେ ଗାଁ
ଅଭାବ, ବେକାରୀ, ଶୋଷଣର ଗୃପରେ
ମଣିଷର ମେରୁଦଣ୍ଡ
ବଙ୍କା ହେଉ ଧନୁବତ୍
ତଥାପି ତମେ ଆମର କାମ୍ୟ,
ତମେ ଥାଅ ।

କାରଣ
ଖାଦ୍ୟ, ଅନ୍ନ, ବସ୍ତ୍ର, ଆଶ୍ରୟ ଅପେକ୍ଷା
ଆମର ଅଧିକ ଦରକାରୀ
ଏକାଠି ହେବାର, ଆନ୍ଦୋଳନ କରିବାର,
ଲେଖିବାର, ଆଙ୍କିବାର, ଚିନ୍ତା କରିବାର ସ୍ୱାଧୀନତା ।

॥ ୩ ॥

ଦୀର୍ଘ ଊଣାଇଶ ମାସର କାଳରାତ୍ରି ପରେ
ସକାଳ ହୋଇଛି ।
ଅନେକ ଲଢ଼ାଇ, ବହୁ ମୃତ୍ୟୁ, ଅନେକ ଅତ୍ୟାଗ୍ରର ପରେ
ଏ ସକାଳ ଯଦିଓ ପୂର୍ଣ୍ଣ ମୁକ୍ତିର ସକାଳ ନୁହେଁ ;
ତଥାପି ମୁକ୍ତବାୟୁରେ ଟିକେ ନିଃଶ୍ୱାସ ନେବାର ସକାଳ ତ !

ଦୀର୍ଘଜୀବୀ ହେଉ ଏ ମୁକ୍ତବାୟୁ ।
ଫ୍ୟାସିବାଦୀ-ଜିରାଫ୍‌ର ଦୀର୍ଘ ଗ୍ରୀବାକୁ
ଆଉ ଥରେ ଉପରକୁ ଉଠିବାକୁ ଦେବା ଅପେକ୍ଷା
ତମର ସତ୍ତାକୁ ବରଣ କରିନେବା ଉତ୍ତମ ।

ଆମେ ତମକୁ ବରଦାସ୍ତ କରିବୁ
ସେତିକି ପର୍ଯ୍ୟନ୍ତ
ଯେ ପର୍ଯ୍ୟନ୍ତ ଜନତାର ଲୌହ-ମେଖଳା
ସୁଦୃଢ଼ ନ ହୋଇଛି ।

ଯେ ପର୍ଯ୍ୟନ୍ତ ମଣିଷ ପ୍ରସ୍ତୁତ ନ ହୋଇଛି
ଶେଷ ମୁକାବିଲା ପାଇଁ ।

॥ ୪ ॥

ଭାରତର ନବ୍ୟ-ନାଜୀ
"ଗଣତନ୍ତ୍ରକୁ ସମ୍ମାନ" ଦେବାକୁ ଯାଇ
ଯେଉଁ "ଭୁଲ୍" କରିଛି
ସେଥିପାଇଁ ସେ ଆଜ ଅନୁତପ୍ତ ।
ତେଣୁ ହୁସିଆର !
ତା'ର ସେ "ଭୁଲ୍"କୁ ସେ ଯେପରି ପୁଣି
ଠିକ୍‌ରେ ପରିଣତ ନ କରେ··· ।

ସେଥିପାଇଁ ଆମେ ଶ୍ୱାନବତ୍ ସଜାଗ
ତମେ ବି ସଜାଗ ରୁହ ।



ରଙ୍ଗାବଗିଚା, କଟକ.
ତା ୯ । ୧୦ । ୭୭

# ମ୍ୟୁନିସିପାଲିଟି—ଜିନ୍ଦାବାଦ୍

ମ୍ୟୁନିସିପାଲଟି   କରୁଛୁ   ଥିର
'ମୈତ୍ରୀ  ସରଣୀ' ନାଁଟି  ତା'ର ।
ନାଗ୍ରିସଙ୍ଘ  ସେ  ସଦନ  ପାଖରୁ
କଲ୍‌ଖାନା  ଦେଇ
ତମେ  ଯିଏ  ହୁଅ  ଚଳ  ପ୍ରଚଳ !

ବଲୁଆ-କୁକୁର  କାମୁଡ଼ା  କାମୁଡ଼ି
କାଉ  ଓ  ଶାଗୁଣା  ସଦା  ଭିଡ଼ାଭିଡ଼ି
ପଶୁ ମାଂସର ତୀବ୍ର ଗନ୍ଧେ ସେବାଟେ କେହ୍ନ•••
ଯାନ୍ତି ନାହିଁ ।
ଯା'ନ୍ତି କେବଳ ଗୋରୁ ମାଂସର  ଖର୍ଦ୍ଦିଦାର•••••
'ମୈତ୍ରୀ   ସରଣୀ'   ନାଁଟି   ତା'ର  ।

ହାତରେ  ଥଳି,
ମୁଖେ  ପିକା  ନଆଁ  ଉଠଇ  ଜଳ
ଦୋଳାଇ ନଜର ଗୁରୁ-ନତମ୍ବ ଯା'ନ୍ତି ଚଳ
ଦର ମୁକୁଳତ ପୀନ ପୟୋଧର ଦ୍ରାବଡ଼-ବାଳୀ
କିଣିବା  ପାଇଁ
ଶସ୍ତା ସୁବିଧା ମାଂସରୁ କିଛି ସେବନ ପାଇଁ ।

ଯଦ୍ଦବା ସେପଥେ ଯାଏ କେ ପଥୁକ୍କା
ନାକରେ ରୁମାଲ, ଦିଏ ବୁଜି ଆଖି
ଜୀବନ ବିକଳେ ହୁଏ ସେ ଝଟରା ରାସ୍ତା ପାର
'ମୈତ୍ରୀ ସରଣୀ' ନାଁଟି ତା'ର ।

ଧନ୍ୟ କଟକ ମ୍ୟୁନିସିପାଲଟି, ଧନ୍ୟ ତମେ !
ମୁଣ୍ଡରେ ତମ ପ୍ରବଳ ଗୋବର ଲାଗିଲା କାମେ ।
ବଢ଼ିଆ ରାସ୍ତା ବାଛି ଦେଲ ତୁମେ ବଢ଼ିଆ ନାମ,
ଜିଲ୍ଲାପାଳ ହେ ବଢିଆ ତମର 'ମୈତ୍ରୀ' ପ୍ରେମ ।
ଏଇ ଖବରଟା ଜାଣିଛୁ ନା ନାହିଁ ଜନତା ଦଳ ?
'ମୈତ୍ରୀ ସରଣୀ' ନାଆଁଟି ଯା'ର ।

କଟକ ସହରେ ଭାଙ୍ଗେ ଶୃଙ୍ଖଳା ଆଇନ ମୂକ,
ଟ୍ରେନ୍ରୁ ମଦ ସାଥେ ଯେତେ ଅବକାଶୀ ବଦ୍ଭାଗ ଲୋକ ।
ଟ୍ରେନର ଡ଼କାୟତ ଧାଥିରେ ପୁଲସି
'ଅଧା ଅଧି' କରି କରେ ମିଶାମିଶି
ନାରୀ ଧରଷଣ ଅଙ୍ଗଭୂଷଣ ଏ କଟକର
'ମୈତ୍ରୀ ସରଣୀ' ପୁରା ସହର ।

ମଶା ମାଛି ଆଉ ନର୍ଦ୍ଦମା ନାଳ
ଗୁଣ୍ଡା ମଦୁଆ ଜୁଆଡ଼ି ଲୋଫର
ସଞ୍ଜ ବୁଡ଼ିଲେ ଚମଡ଼ା ବେପାର
'ମୈତ୍ରୀ'ରେ ସବୁ ମିଳୁଛି ଏଠି ।
ନାହିଁ ତ ବାଧା
କଟକ ସହର ମୈତ୍ରୀ ସହର କୃଷ୍ଣ ରାଧା ।

ସାରା ସହରରେ 'କୁଞ୍ଜ କାନନ ତୋଳାଇ ଦିଅ
ସଞ୍ଜ ବୁଡ଼ିଲେ ସବୁ ମାଲମତା ଯୋଗାଇ ଦିଅ
ତା'ହେଲେ ଜମିବ 'ମୈତ୍ରୀ'ର ଲୀଳା
ଗ୍ରେଟା, ପେଟା, ମୋଟା ଯେତେକ ଗୋଦଣ୍ଡା
ଗୋପୀ ଜନ ସାଥେ 'ମୈତ୍ରୀ' କରିବେ, ହୋଇବ ଘୋର
'ମୈତ୍ରୀ ସରଣୀ' କି ଦରକାର ?



[ କଟକ ସହରର ନାରୀ ସେବା ସଦନଠାରୁ ଡାଇରେକ୍ଟର ଅଫ୍ ଇଣ୍ଡଷ୍ଟ୍ରିଜ୍ ଦେଇ ଗୋପବନ୍ଧୁ ମାର୍ଗସ୍ଥିତ ପାଓ୍ୱାର ହାଉସ ପର୍ଯ୍ୟନ୍ତ ବାରବାଟୀ ଷ୍ଟାଡ଼ିୟମର ପଛ ରାସ୍ତାଟିର ନାମ 'ମୈତ୍ରୀ ସରଣୀ' ନାମରେ ନାମିତ କରିବାକୁ କଟକ ପୌରସଂସ୍ଥା ସ୍ଥିର କରିଛନ୍ତି ।

(ମାତୃଭୂମି—୧୬-୨-୭୮)

ଏହି ରାସ୍ତାଟିରେ ଲୋକବାକ ଚଳାଚଳ ହୁଅନ୍ତି ନାହିଁ । ଏ ରାସ୍ତାରେ ଏକ ବିରାଟ ଲାଇସେନ୍ସପ୍ରାପ୍ତ କିଲ୍‌ଖାନା ରହିଛି । ପଚା ଗୋରୁମାଂସର ବିକଟ ଦୁର୍ଗନ୍ଧ ସାଙ୍ଗକୁ ଶ୍ୱାନ-ଶୃଗାଳ ଓ କାଉ ଶାଗୁଣାଙ୍କ ସଂଘର୍ଷ ଅବିରତ ଲାଗି ରହିଥାଏ ।—ଲେଖକ]

# ଦିନେ ନା ଦିନେ

କଂଗ୍ରେସ ଜାତ ଦ୍ରବ୍ୟ ତଠମ ତ
ଜନତା ଦଳ,
ପାଇଚ ଯାଇଛ ଡଭଜ ଗୋଟାଏ
ଶାସନକଳ ।

ପୁରୁଣା ଅମଲା-ତନ୍ତ୍ର, ପୁଲିସି
ସୈନ୍ୟ ଥାଟ
ଏପାଖେ ରୁଷିଆ, ତେଣେ ଆମେରିକା
ଲଗିଚ୍ଛ ନାଟ ।

ଦେଶୀୟ ମୁନାଫାଖୋର, ମହାଜନ
ବିରଳା, ଟାଟା
ଗାନ୍ଧୀ ତ ନାହିଁ, ଛନ୍ତି ତାହାର
ଜାରଜ ବେଟା ।

ଶୋଷଣ, କଷଣ, ଜାଲ୍-ଜୁଆଚ୍ଚୋରି
ପୂର୍ବ ପରି
ଛନ୍ତି ଭାରତେ ପୂର୍ବରି ସେହି
ଅତ୍ୟାଚ୍ଚରୀ ।

ତାଙ୍କର ମେଳେ ଏବେ ତମେ ଥିଲ
ଅଂଶୀଦାର,
ବୃନ୍ଦାବନରେ ତମେ ସାଜିଅଛ
ବଂଶୀଧର ।

ତମର ଭିତରେ ଆଜି ଫଟାଫଟି
ଫାଟୁଛି ଦଳ
ଚରଣେ ଲୋଟୁଛି ଦୁଖିନୀ ଭାରତ
ଯେତେକ ଖାର—

ସଭିଏଁ ତ ଆଜି ଦୁର୍ନୀତିଖୋର
କେହି ତ ନାହିଁ
ଦୀର୍ଘଶ୍ୱାସର ଉଠେ .କଳାମେଘ
ଈଶାଣ ଦେଇ ।

ଭାରତର ନାଗା ଝଟିକାବାହିନୀ
ସଙ୍ଗଠିତ
ହେଉଛି ନୀରବେ, ଆସୁଛି ପ୍ରବଳ
ରକ୍ତପାତ ।

ଦପ୍ ଦପ୍ ହୁଏ ଶାହା କମିଶନ
ଲଣ୍ଠନଟା
ତଳ ଓ ଉପର ମୁକୁଳା ଯାହାର
ଗୁଣ୍ଠନଟା ;

କିଏ ସେ ଖୋଲିବ ଗୁଣ୍ଠନ ତା'ର
ଅବାସ୍ତବ
ମଶାଣିର ମାଟି ଡାକେ ରହି ରହି
"ଆ'ରେ ଶବ !"

ସାବଧାନ ତମେ ଜନତା ଦଳ ହେ
ଟିକଏ ଚାହଁ
କୋଟି କୋଟି ମାତା, ଭଗିନୀର କଆଁ
ଶୁଖିଛ ମୁହଁ ?

ପେଟେ ଭାତ ନାହିଁ, ଲଙ୍ଗଳା ଛୁଆ
ପିଲେହି ପେଟେ
ଅସହାୟେ ବୁଲେ ଗ୍ରାମେ ଓ ନଗରେ
ରାସ୍ତା ଘାଟେ ।

ଯାହାର ଉତ୍ତର ଦେବାକୁ ପଡ଼ିବ
ଦିନେ ନା ଦିନେ
ନ ହେଲେ ମଣିଷ ଶୁଝିବ ତା ହେଁଣା
ରକ୍ତସ୍ନାନେ ।

ତା ୧୨ । ୮ । ୭୮



# ବୁର୍ଜୁଆ ଭୋଟ୍‌ପ୍ରଥା ବିରୁଦ୍ଧରେ ଗୋଟିଏ କବିତା

॥ ଏକ ॥

ପାହାଡ଼ ଉପରେ ମେଘ ବରଷିଲେ ସେ ପାଣି ନଈରେ ପଡ଼େ
ସବୁ ପାହାଡ଼ରୁ ପାଣି ଗଡ଼ ଗଡ଼ ନଦୀର ବକ୍ଷ ଫୁଲେ ।
ବନ୍ୟାର ବେଗେ ଫେନ-ଗମ୍ଭୀର ପଙ୍କିଳ ଜଳଧାର
ସମ୍ମୁଖେ ଛୁଟେ ଦ୍ୱ'କୂଳ ଭସାଇ କେତେ ଗ୍ରାମ କ୍ଷେତ ଖଳା !
ଜଳର ଅତଳେ ଲଭଇ ସମାଧି, ଆକାଶ ଅବନୀ ମିଶେ
ଗୃହହରା ହୋଇ ଉଠେ ହାହାକାର, ଜଳ ଖାଲି ଜଳ ଦିଶେ ।

ସରିଲେ ବର୍ଷାକାଳ,
ଶୂନ୍ୟ-ଶେଯରେ ପଡ଼ି ରହେ ନଦୀ ନିର୍ଜଳା ମନ ତାର ।
ପୁଣି କେବେ ହେବ ଗିରିଶୀର୍ଷରେ ବର୍ଷାର ବାରିପାତ ?
ବିରାଟ ପ୍ରଶ୍ନବାଚୀର କୁଠାର ନଦୀ ମନେ କ୍ରମାଗତ—
—ଲକ୍ ଲକ୍ କରେ ଦିବସ ଗଣି, ଆସିବ ସେଦିନ କେବେ ?
ଝୁରେ ନଦୀ-ମନ-ପ୍ରାଣ-ଯୌବନ ଅଭିସାର-ଉତ୍ସବେ—
କେବେ ଯୋଗ ଦେବ, ସାଗର ପଥରେ ମିଳନରେ ପଡ଼ିରହି
ରବେ ସେଉଁପରି ତଟିନୀ-ମାନସ ବାଲିର ଶଯ୍ୟା ନେଇ ;
ଠିକ୍ ସେହିପରି ଆଜ ଏ ଦେଶରେ ଯେତେ ଦଳ, ଉପଦଳ,
ଏପାରି-ସେପାରି ଭୋଟ-ବେପାରୀ, ଗୋଟିଏ ଗଛର ଫଳ ।

କଏ ଶ୍ରେଷ୍ଠ, କଏ ବଡ଼, କା ଚେହେରା, ଭିନ୍ନ ଭିନ୍ନ ରୂପ
ଗୋଟିଏ ଘାଟିର ସବୁ ତ ଭକ୍ତ, ସବୁ ତକ ମଦ୍ୟପ ।

॥ ଦୁଇ ॥

ଆରୁ-ଭାରତର ସମାଜ ଜୀବନେ ପର୍ବତ ଏକ ଠିଆ—
କାହିଁ କେତେକାଳୁ ହୋଇଛୁ ମାରବେ 'ଗଣତନ୍ତ୍ର' ତା ନାଆଁ ।

ସେହି ପର୍ବତ ଶିଖରେ ତ କେଉଁ ବର୍ଷା ହୁଏନା ପାଣି
ବରଷେ କେବଳ ଭୋଟଅଣ୍ଟ କାଗଜ, ଦେଖିଲେ ପାରିବ ଜାଣି ।

ସେହି ପର୍ବତ ପାଦଦେଶ ଘେରି ଶ୍ରେଷ୍ଠବଡ଼ ବହୁ ନଦୀ
ଥାନ୍ତି ମାରବେ ଚତୁରେ ଗୋପନେ ସବୁକାଳେ ନିରବଧି ।

'ଗଣତନ୍ତ୍ର'ର ପାହାଡ଼ ଚୂଡ଼ାରେ ଭୋଟଅଣ୍ଟ ବରଷା ହେଲେ
ସେହି ଶ୍ରେଷ୍ଠବଡ଼ ନଦୀବାଟେ ଦେଇ ମହାନଦୀ ବୁକେ ପଡ଼େ ।

ତା ପରେ ସେ ନଦୀ ଫୁଲାଏ ଉଦର, ଦୁଇକୂଳ ଯାଏ ଖାଇ
ମରୁଡ଼ି ମଡ଼କ, ଶୋଷଣ କଷଣ ଦାନ ଯାଏ ଦେଇ ଦେଇ ।

ସେ ନଦୀ ଦୁ'କୂଳେ ଟାଟା ଓ ବିରଲା ଦେଶୀୟ ମୁନାଫାଖୋର
ତାଙ୍କ ପଛକୁ ରୁଷିଆ ଓ ଆମେରିକା ଦୁଇ ତସ୍କର ।

ମହାଭାରତର ସମାଜ ଜୀବନ ଗ୍ଣତରୁ କଲଜା କାଢ଼ି
ମେଲାଇ ଦୋକାନ ବସି ଦେଖନ୍ତି 'ଗଣତନ୍ତ୍ର'ର ବାଢ଼ି ।

ଏହି ନଦୀ ଜଳରେ ଏମାନଙ୍କର ଭାସେ ବାଣିଜ୍ୟ-ପୋତ,
ଦୁଇ କୂଳେ ପୁଣି ସ୍ୱାଗତିକା ଗାଏ ପୁଞ୍ଜି-ଐରାବତ ।

॥ ତିନି ॥

ଏହି ସେ ବହୁଛି ନଦୀ,
ଏହି ନଦୀ ସାଥେ ଯୋଗାଯୋଗ ରଖେ ମରଣର ଆମୃଧି ।

ହେ ମଣିଷ-ମେଘ, ଯେତେ ବର୍ଷିବ ତମେରେ ଭୋଟଅଣ୍ଟ-ପାଣି,
ସବୁତକ ମହାନଦୀରେ ପଡ଼ିବ, ହେବ ସମୁଦ୍ରଗାମୀ ।

ଯେଉଁ ଶବ୍ଦରେ ମୋହର ବସା ତୁ, ଯାହାକୁ ଦେଏ ତୁ ଭୋଟ୍
ପାଇବ ତାହାକୁ ଲୁଟିଖିଆ ଦଳ, ମାରିବ ନଷ୍ଟେଁ ଗୋଟ୍ ।

ଶୋଷକ ଦଳର ବିଶ୍ୱ-ସଙ୍ଗଠନ,
ପୋଥିରେ ଅଛି ତା ନିର୍ଦ୍ଦେଶାବଳୀ; ଡକାୟତି, ଲୁଣ୍ଠନ ।

ଶଇତାନ ସେହି ଲୋଭ-ରାବଣର ଭାଇ, ପୁଅ ଆଉ ନାତି
ନାନା ଦେଶେ ନାନାବେଶେ ନାନାନାମେ ବଣିକ ପୁଞ୍ଜିପତି ।

ତାଙ୍କର ପୋଷା ଦଳ-ଉପଦଳ ମଣିଷକୁ ଠକିବାକୁ
ନାନା ରଙ୍ଗର ପତାକା ଉଡ଼ାଇ ନାନାବେଶେ ଆସେ ଡାକୁ ।

ସାରା ଦୁନିଆକୁ ଲୁଟି କରିସାରି ଭାଗ ବାଣ୍ଟିଲା ବେଳେ
ଆପଣା ଭିତରେ ଚାଲେ ପିଟାପିଟି, ଗୋଇ ଖୋଲାଖୋଲି ଚାଲେ ।

ଏଇଥିରେ ତୁହି ବିଶ୍ୱାସ କର ଇଏ ନୁହେଁ ସିଏ ଭଲ—
—ଭାବୁ ତୁ ଯାହାକୁ, ସିଏ ବି ଆରେକ ନିର୍ଘାତ ଠକ ଚୋର ।

॥ ଚାରି ॥

ହେ ସରଳମନା ନର-ନାରାୟଣ
ଏତକ ପାରୁନୁ ଜାଣି ?
ଯାତ୍ରାଦଳର ଅଭିନୟଟାକୁ
ସତ ବୋଲି ଅଛୁ ମଣି !

ଭଲ କରି ଟିକେ ଦେଖ,
ସିଏ କାଲି 'ରାମ' ସେ ଆଜ 'ରାବଣ'
'କୁରୁ' ହୁଏ 'ପାଣ୍ଡବ' ।

ହାଣ୍ଡିଉଡ଼ା ସାଜେ 'ସୀତାଠାକୁରାଣୀ'
ଗୋଲାପୀ ରଙ୍ଗ ମାଖି
ଟିଣର ଖଣ୍ଡା ଦେଖାଇ ତାହାକୁ
'ରାବଣ'ଟା ନିଏ ଟେକି ।

'ଦୁଃଶାସନ'ର ସାଥେ ଆସି 'ଭୀମ'
ତମ ଆଗେ ଗଡ଼ାଗଡ଼ା
'ଦ୍ରୌପଦୀ' ବେଶେ ଆସିଛୁ ଯୋଉଟା
ସେଟା ଆଉ ହାଂଜଡ଼ା ।

କାଲି ଯାଇ ସିଏ ବାସନ ମାଜିବ
ଦାଣ୍ଡାଗ୍ରାମ ଶେଠ ଘରେ
'ଭୀମ' ଯେ ହୋଇଛୁ କାଲି ଯାଇ ସିଏ
ନଇଁବ ତା ଧାନ ବଳେ ।

'ଦୁଃଶାସନ'ଟା ଗୁଣିବ ପିଆଜ
ଟାଣିଟାଣି ଡାଗ୍ରବଡ଼
'ରାମ' ସେହି 'ରାମା' ନରଣପୁରର
ବୁହେ ଯେ ଶଗଡ଼ ଗାଡ଼ ।

ରାତି ପାହିଗଲେ ନାଟ ତ ସରିବ
ଆଖଡ଼ା ଘରକୁ ଯା !
'ରାମ' ଓ 'ରାବଣ', 'ସୀତା', 'ଦ୍ରୌପଦୀ',
ସବୁରିକୁ ଦେଖି ଆ !!

ଗୋଟିଏ ଦଳର ଲୋକ ସବୁ ତକ
ଭଡ଼ାରେ ତ ଥିଲେ ଆସି
ଲୁଙ୍ଗି ପାଲଟି, ଆକ୍‌ବର ଖାଁ
ଗୁଡ଼ାଖୁ ଟିକିଏ ଘଷି
ନିତ୍ୟକର୍ମ ସାରିବା ପାଇଁ କି
ନଈକୂଳେ ମେଳା ମେଳା
ଏଇମାନେ କାଲି ରାତିରେ ତୋ ଆଗେ
ହେଉଥିଲେ ଗଡ଼ାଗଡ଼ା ।

॥ ପାଞ୍ଚ ॥

ଯାତ୍ରାକୁ ଦେଖି ଦେଇ ମନରେ ତୋହର ଦୁଃଖ କାହିଁକି ହୁଏ ?
କାଲି ଥିଲା ସେ'ଟା ଅଭିନୟ, ଆଜି ବାସ୍ତବତାଟା ଇଏ ।

କାଲି ଗଡ଼ାତଡ଼ା, ଆଜି ହାତଧରା, ଏମାନେ ଯାତ୍ରାବାଲା
ଆଜି ଖିଆପିଆ, ହସାହସି, ଶୁଆ, ଏକାଠି ଗୁଳଛନ୍ତି ବୁଲା ।

ହେ ମହାମାନବ, ସମ୍ବର ତୋର ଶୋକ,
ଦେଖିଲୁ ତ ଭାଇ, ଗୋଟିଏ ଯାତ୍ରା ଦଳର ଏମାନେ ଲୋକ !

'ସାଧୁ' ବୋଲି ଭାବ ଫୁଲମାଳଟିଏ ଆଜି ଦେବୁ ଯା'ର ଗଳେ,
କାଲି ସେ ମାଳାଟି ଲମ୍ଭିବ ତୋର ଗୈରଦଳ ହୃଦୟରେ ।

॥ ଛଅ ॥

ଛିଡ଼ାନା ଲତାରୁ ଫୁଲ,
ଭାଷଣରେ କେବେ କଷଣ ଯାଏନା, ପାତିଲେ ଭିକ୍ଷାଥାଳ—
ମୁକ୍ତି ମିଳେନା ରେସନ୍‌କାର୍ଡ଼ରେ, ଭୋଟଅଙ୍କେ ଯାଏନା ଭୋକ
ଭୋଟ ବାଟରେ ମର୍ତ୍ତ୍ୟଟା କେବେଁ ହୁଏନା ସ୍ୱର୍ଗଲୋକ ।

ସ୍ୱର୍ଗକୁ ନଜେ ଗଢ଼ଇ ମଣିଷ ଲହୁ ଲୁହ ଝାଳ ଦେଇ
ତୋ ଭିତରେ ଥିବା ତୃତୀୟ ନୟନ ଖୋଲି ଦେଖ୍ ଥରେ ଭାଇ !

ପୃଥିବୀଟା ତୋର ଖାଲି ଶ୍ରମମୟ, ଶ୍ରମରେ ହୋଇଛି ଗଢ଼ା
ନେତା ନାହିଁ ଲୋଡ଼ା ମନ୍ତ୍ରୀ, ଏମ୍.ଏଲ୍.ଏ., ସେନାପତି ଆଜି ଲୋଡ଼ା ।

ଶସ୍ତାବନ୍ଧୁ ଦଲକୁ ତୁ ଗୁଣ୍ଡ୍, ଆ, ବନ୍ଧୁକ ଧର୍ !
ମଣିଷ ଉପରେ ଚିରକାଳ ଯିଏ କରୁଛି ଅତ୍ୟାଚାର,

ବଦ୍‌ଲା ନେଏ ତୁ, ଲେଖ୍ ଇତିହାସ, ଆଖିର ଆଲୋକ ଜାଳ,
ସୂର୍ଯ୍ୟ ଉଦୟୁ ଆଗରୁ ପୂର୍ବ ଆକାଶକୁ କର୍ ନାଲି ।

ଛନ୍ଦେ ଛନ୍ଦେ ଦାଆର ଆବାଜ୍ ବଜ୍ର ହାତୁଡ଼ି ପିଟା
ବିପ୍ଳବ ତୋର ମହାଉତ୍ସବ, ଶ୍ରେଅଷ୍ଠ ବେପାର ଝୁଟା ।

ଯିଏ ଆସି ତୋତେ ଶ୍ରେଅଷ୍ଠ ମାଗୁଛି; ପକା ତା ମୁହଁକୁ ଛେପ
ଶ୍ରେଷ୍ଠ ବଦଳେ ନର-ନାରାୟଣ ଦେଖା ତୋ ବିଶ୍ୱରୂପ ।

ତା ୬ । ୧୨ । ୭୯



# କି କଲ କି କଲ ?

କି କଲ କି କଲ ମୂର୍ଖର ଦଳ, ଏ ଭୁଲ୍‌ର ନାହିଁ କ୍ଷମା
ସୂର୍ଯ୍ୟ ଉଦୟୁ ଡେରି ହେଲା ବୋଲି ଡାକି ତ ଆଣିଲ ଅମା !
ଚୋର ନେଲା ବୋଲି ଘରର ବାସନ, ବାସନ କିଣିଲ ନାହିଁ
ଛତର ଭାତକୁ ଆଦରି ତ ନେଲ, ପତର ପାତିଲ ଯାଇ—
—ଜୀବନ୍ତ ଯମ ଉଆସ ଦୁଆରେ ଅସୀମ କ୍ଷୁଧାର ବଶେ
ତମ ଭୂମିକାରେ ଇତିହାସ ତାର ମଥା ନତ କରି ବସେ ।
ଟିକେ ଚିନି, ଟିକେ କିରାସିନି ଆଉ ମୁଠାଏ ଚାଉଳ ପାଇଁ
ଆପଣାର ଜିଭ କାଟି ଫିଙ୍ଗିଲ, ଖନାହେଲ ଶେଷେ ଭାଇ !
ଏକାଠି ହେବାର, କଥା କହିବାର ଅଧିକାର, ସ୍ୱାଧୀନତା
ଯାହା ଆଣିଥିଲ ଏକଦା ଛଡ଼ାଇ, ତା ବୁକେ ଜାଳିଲ ଚିତା !

ଭାରତମାଟିର ଅଯୋଗ୍ୟ କୋଟି କୋଟି ସନ୍ତାନ ଦଳ
ବଳତ ନଥିଲା ହାତରେ ତମର ହତିଆର ଧରିବାର ।
ହତିଆରଧାରୀ ମୁକ୍ତିକାମୀକୁ ପଛରୁ ମାରିଲ ଛୁରୀ
'ଜାହାଁପନା' ପୁରେ ବେଗମ୍ ମହଲେ ହାୟ କୁର୍ଣ୍ଣିସ୍ କରି !—
ରାଜନୀତି ଆଉ ଅର୍ଥନୀତିର ଧାର୍ ଧାରିଲନି ତମେ
ନୂଆ କରି "ରାଜଭକ୍ତି" ଶିଖିଲ "ପ୍ରଜାବୃନ୍ଦ"ର ନାମେ !

କୂପମଣ୍ଡୂକ, କୂପଛଡ଼ା ଦେଖ ବିରାଟ ଦୁନିଆ ଅଛି,
ସେହି ଦୁନିଆରେ ମଣିଷ ନୁହଇ ତମ ପରି ପୋକମାଛି ।
ସକାଳ ହେବାକୁ ଡେରି ହେଲେ ସେଠି ମଣିଷ ଉଠୁଛି ଜଳି
ଥରୁଛି ରାଜାର ସିଂହ-ଆସନ, ରାଜା ପଡୁଅଛି ବଳି ।
ଅତ୍ୟାଗୃହରକୁ ମାନନେବା ଦୂରେ, ଅତ୍ୟାଗୃହୀଙ୍କୁ ସାଫ୍—
କରିବାକୁ ଲଢ଼ି, ହାରି, ଉଠିପଡ଼ି ତେବେ ବି କରୁନି ମାଫ୍ ।
ଆଣୁନାହିଁ ଡାକ ଜାତୀୟ ଜୀବନେ ହିଟଲର, ମୁସୋଲିନୀ
ଲେଡ଼ୀ-ମ୍ୟାକ୍‌ବେଥେ ଇତିହାସେ ଆଣି କରୁନାହିଁ ବଜାପିଣୀ ।

ଯେଉଁ ଡାଳେ ତମେ ବସିଥିଲ ସେହି ଡାଳରେ ମାରିଛ ଗେଞ୍ଚ
ଆଜ ସେହି ଡାଳ ଖସୁଛି ତଳକୁ, ଶୀଘ୍ର ମାଟିର ଭେଟ—
—ପାଇବ ଯେବେଳେ, ଝରିବ ରୁଧିର, ଗର୍ଜିବ ତାଳାଗୁଳି
'ବନ୍ଧୁ' ଭାବରେ ବନ୍ଧୁକ ଆସି ଘେରିଯିବ ଯମ ଭଳି ।
ଚିତ୍କାର କଲେ ବୁଟ୍ ଗୋଇଠାରେ ଗୁଣ୍ଡହାଡ଼ ହେବ ଚୂନା
କୁଡ଼ଆ ଘେରି ତୋ ନାଚିବ ମରଣ, ଆସୁଛି ସେଦିନ ଅନା ।

ପ୍ରଗତି ଚକାର ଦୁଆର ଗତି ରୋଧିଅଛ ମେଷ ଦଳ
ମେଷପାଳକାର ହୁକୁମନାମାକୁ ବସି ଅପେକ୍ଷା କର ।
ଜୀବନ ଗଲେ ତ ଜୀବନ ଆସଇ ନୂତନ ପତାକା ଧରି
ସେହି ଅନାଗତ ଜୀବନକୁ ତମେ ନରକରେ ଦେଲ ଠେଲି !
ଭାବିଦେଲ୍ ବେଳେ ମନେ ପଡ଼ିଯାଏ ପରାଧୀନତାର ବ୍ୟଥା
ମନେ ଜାଗିଉଠେ ନାଗଜର୍ମାନୀ, କୋଟି ମଶାଣିର ଚିତା !
ଗୁପ୍ତହତ୍ୟା, ଗୋପନ ଗିରଫ, ମଧ୍ୟରାତ୍ରିର 'ମିସା' (୧)
ହିମାଚଳ ଠାରୁ କୁମାରିକା ଯାଏଁ ଘନ ଅନ୍ଧାର ନିଶା ।
କି କଲ କି କଲ ସବୁ ଭୁଲିଗଲ ଆଉ ବାକି ନାହିଁ କିଛି
ଇଏକି ମିଳିତ-ଆତ୍ମହତ୍ୟା ପଥ ନେଲ ସବୁ ବାଛି !

(୧) 'ମିସା'......ଆଭ୍ୟନ୍ତରୀଣ ନିରାପତ୍ତା ରକ୍ଷା ଆଇନ ।

‘ଡନଗ’ଡନ୍’ ଓ ‘ବାରବୋର’ ବାଟେ ଆସୁଛି ପାଇବ ଚିନି
ଆସେ ପୁଣି ଖାସୁ ନି କୋଣୀ ଯୋଜନା, ଲମ୍ବାକଲଆ ମୁଣ୍ଡ ।
ଏଥର ପିଆଜ, ଚିନି, କିରାସିନି ନେଇ ଧରିଥାଅ ଭାଲୁ
ଏ ଭାଲୁ ତ ଆଉ ନଗ୍ଗଡ଼େ ତୁମକୁ, “ଗଣତନ୍ତ୍ର”ର ଗଲୁ—
—କେତେ ମଜାଦାର ବୁଝିବ ଏଥର ଆମେ ତ ଗୃଳଲୁ ଭାଇ,
ପଞ୍ଚସ୍ତରୀ ସାଲେ ଯେଉଁଠାରେ ପେଲୁଥିଲୁ ଘଣା ଯାଇ । (୨)
ସେଠାକୁ ନନେଇ ଅଥବା ଗୁଳରେ ଉଡ଼ାଇବ ଆମ ଗ୍ରନ୍ଥ
ଯା ହାତରେ ତମେ ଦେଇଛ ଧରାଇ ଝୁନାବାଡ଼ି, ପାଠଛତ ।
ଠିକ୍ ସେ ‘ମାଲିକ’ ତମେ ତାର ‘ଦାସ’ ଏ ଖାରୁ ଭାରତ ଭୂମି
ଏଠି ସ୍ୱାଧୀନତା ଲାଗେ ଭାରି ପିତା, ମିଠା ଲାଗେ ଖାଲି ଚିନି ।

ତା ୭ । ୧ । ୮୦



(୨) ୧୯୭୫ ସାଲରେ ରବି ସିଂ ହିଁ ଏକମାତ୍ର ଓଡ଼ିଆ କବି, ଯିଏକି ଜରୁରୀ ପରିସ୍ଥିତିର ଶିକାର ହୋଇ କାରାବନ୍ଦୀ ଥିଲେ ।

# ଇତିହାସର ଡାକ

ଶବ୍ଦୁର ସବ୍‌ମେସିନ୍‌ଗନ୍‌ର ଠିକ୍ ପାଖ ଦେଇ
ବାଟ ଖୋଲିବା ଛଡ଼ା,
ଦଗ୍-ରାଇଫେଲ୍‌ର ତାଜା, ତତଲା ତଥା
ଜୀଅନ୍ତା ବୁଲେଟ୍ ଠାରୁ
ଅଧିକ ଗତିବାନ ହୋଇ
ଗତି କରିବା ବ୍ୟତିରେକେ
ଅନ୍ୟ କୌଣସି ଉପାୟ ନାହିଁ
ଆଜ ।

ଚପ୍‌ଚୁପ୍ ହାତଗୋଡ଼ ଯୋଡ଼ି ଠିଆ ହେଲେ
ଲକ୍ଷ୍ୟସ୍ଥଳ ଆପଣା ଛୁଏଁ
ପାଖକୁ ଆସେନା ।
ମୃତ୍ୟୁର ହିମ-ଶୀତଳ ନାମହୀନ ଆତଙ୍କରେ,
ପ୍ରେୟସୀର ରଙ୍ଗୀନ୍ ପଣତ ଉହାଡ଼ରେ
ଆଶ୍ରୟ ନେଲେ
ପୋଷାକ ପିନ୍ଧା-ଠକ ଖାକୀଦସ୍ୟୁର ନାଲଆଖି
ଏବଂ ସଙ୍ଗୀନ୍‌କୁ ଡରି
ଆଇନ୍ ମାନି 'ଲାଇନ୍' ଦେଲେ,
ସମାଜର ଆମୂଳ ପରିବର୍ତ୍ତନ-ପ୍ରକ୍ରିୟା
ସ୍ଥାଣୁ ହୋଇଯାଏ ।
ସେ ବାଟରେ 'ଦୃଷ୍ଟାନ୍ତ' ସ୍ଥାପନ ହୁଏନା ।

ସିଏ ବିପ୍ଳବୀ,
ସିଏ ପତିତପାବନ-ବାନାର ଧାରକ ଓ ବାହକ
ସେହି କେବଳ
ପ୍ରତି-ବିପ୍ଳବୀ-ହିଂସାକୁ
ବିପ୍ଳବୀ-ହିଂସାର ହତିଆର ମାର୍ଫତ
ପ୍ରତିହତ କରିପାରେ ।
ବିକେନ୍ଦ୍ରୀକରଣ କରିପାରେ
ହତ୍ୟାର ମନୋପଲିକୁ ।
ନିସ୍ପନ୍ଦ-ହୃଦୟର ପେଟ୍ରୋଲଟାଙ୍କିରେ
ସାମାନ୍ୟ ଏକ ସ୍ଫୁଲିଙ୍ଗ ପ୍ରତୀକ୍ଷାରେ ଥିବା
ଯୁଗ ଯୁଗର ପୁଞ୍ଜୀଭୂତ ବାରୁଦଗଦାରେ
ସେହି କେବଳ ରୋପଣ କରିପାରେ
ଦାବାନଳର କ୍ଷୁଦ୍ର ବୀଜଟିଏ ।
ଦେଶକୁ, ଜାତିକୁ, ସମାଜକୁ,
ସାରା ଦୁନିଆକୁ
ସେହି କେବଳ ଦେଇପାରେ ବିପ୍ଳବ,
ମହାନ୍ ଜନଗଣଙ୍କୁ ମୁକ୍ତି ।

ସିଏ ଜଣେ ନୁହେଁ—ଅନେକ ।
ସିଏ ବ୍ୟକ୍ତି ବିଶେଷ ନୁହେଁ—ବିପ୍ଳବୀ ପାର୍ଟି ।

ସେ ପାର୍ଟିର ଜନ୍ମ ହୁଏନା ଭୋଟ୍ ପ୍ରଥାରେ ;
ଦଳବଦଳ ବା ରାଜନୈତିକ-ବେଶ୍ୟାବୃତ୍ତିରେ ।
ବୈଧାନିକ ଭାବରେ ନୁହେଁ
ଅବୈଧ, ବେଆଇନ
ଏବଂ ଅଜ୍ଞାତବାସର ଅନ୍ଧକାର ଜରାୟୁ ଭିତରେ
ରଚିତ ହୁଏ ତାର ଜନ୍ମଜାତକ ।
ସେ ଜାତକ ରଚିତ ହୁଏ
ଅବୈଧ, ବେଆଇନ
ଏବଂ ଅଜ୍ଞାତବାସର ଅନ୍ଧକାର ଜଠର ଭିତରେ ।

ଇତ୍ତିହାସର ସେହି ଦୁରନ୍ତ ଅଥଚ
ପ୍ରଚଣ୍ଡ ଗର୍ଭବେଦନାର କ୍ରନ୍ଦନ
ରଜନୀର ନିଷିଦ୍ଧ ପ୍ରହରରେ
ଯେତେବେଳେ ଆରମ୍ଭ ହୁଏ
ତାହା କେବଳ ଜାଣିପାରେ
ସଙ୍ଗଠିତ ସଚେତନ ଲଢ଼ୁଆ ମଣିଷର ଦଳ ।

ସେଇହିଁ ତାର ଜନକ,
ତା'ର ନିର୍ଦ୍ଦେଶରେ
ଆୟୁଷ୍ମାନ ସେହି ନବଜାତକକୁ
ଆଶୀର୍ବାଦ କରେ ଇତିହାସ,
ରକ୍ଷାକରେ
ନିଜର ଅସ୍ଥି-ପେଶୀର ଲୌହବଳୟ ଭିତରେ ।
କାରଣ, ସିଏ ବିପ୍ଳବ
ମାନବ ଜୀବନର ତାହା ଏକମାତ୍ର 'ମହୋତ୍ସବ' ।

ସୌଖୀନ୍ ରୋମାଣ୍ଟିକ୍ କବି ଯେପରି
କଳ୍ପନା କରେ,
ଦୁଇଟି ସବୁଜପତ୍ର ମଧ୍ୟରେ
ରୁମାଲରେ ଫୁଲଟିଏ ଫୁଟାଇବା ପାଇଁ
ଫୁଲର ମାନସିକ-ମାନଚିତ୍ର
ଯେପରି ଆଙ୍କି ବସେ
କୌଣସି ତରୁଣୀ-ବଧୂ,
ପ୍ରବନ୍ଧଟିଏ ରଚନା ଆଗରୁ
ଯେପରି ମାନସିକ-ପ୍ରସ୍ତୁତି ନିଏ
କୌଣସି ବୁର୍ଜୁୟା ଶିକ୍ଷାଶାଳାର ଗୋଲ୍ଡପଗଡ଼ୀ ଅଧ୍ୟାପକ,
ଏ ସବୁ ଭିତରୁ କୌଣସିଟି ନୁହେଁ
ସେହି ନବଜାତକ······ସେହି ବିପ୍ଳବ ।

କେଉଁଠି ତାଜା ରକ୍ତ
କେଉଁଠି ମୃତ ଦେହ
କେଉଁଠି ଭଗ୍ନ ଇମାରତ
କେଉଁଠି ଆର୍ତ୍ତ ଚିତ୍କାର
କମାଣ ଏବଂ ବୋମାର ଆବାଜ
ଗୁଳିର ଘନ ଘନ ବଂଶୀଧ୍ୱନି ମଧ୍ୟରେ
ପତାକା ଯହିଁ ଗର୍ବିତ ହୋଇ
ଅଜସ୍ର ପୋଷ୍ଟର-ଡେଣାର ଆନ୍ଦୋଳନରେ
ବଦ୍ଧମୁଷ୍ଟି ଉତ୍ତୋଳିତ କରି
ସିଏ ଗ୍ରହଣ କରେ ଅଭିବାଦନ
ତା'ର ନାଁ 'ବିପ୍ଳବ' ।

ସିଏ ଆସେ······
ଗୋଟିଏ ଶ୍ରେଣୀକୁ ବଳପୂର୍ବକ
ଅନ୍ୟ ଏକ ଶ୍ରେଣୀରେ ରୂପାନ୍ତରିତ କରି ।

ତା' ପରେ
ତାର ଅଭିଯାତ୍ରା
ଏକ ସାମ୍ୟବାଦୀ ସମାଜର ନିର୍ମାଣ ପଥରେ ।
ପ୍ରକୃତି ଉଦ୍ୟାନରେ
ହଜାର ହଜାର କୁସୁମର ପ୍ରସ୍ଫୁଟନ ଘଟେ ।

ଏହି ଐତିହାସିକ- ଅଗ୍ନି ଉତ୍ସବକୁ
ଆଜି ନହେଲେ କାଲି
କେଉଁନା କେଉଁ ଆରମ୍ଭ କରିବାକୁହିଁ ହେବ ।

ତେଣୁ, ସାଥୀ !
ବାରବୋର୍ ରଭଲଭରର କ୍ଷିପ୍ରଗୁଳି
ଥ୍ରି-ନଟ୍-ଥ୍ରି ରାଇଫେଲର ଜୀବନ୍ତ ବୁଲେଟ୍,
ବାରୁଦର ମେଘ ଆଉ ଅନ୍ଧକାର ରାତ୍ରି,
ଅକାଳ ମୃତ୍ୟୁର ଖାକିବ୍ୟୂହ,
ଜେଲ୍, ଲାଠି, ଗ୍ୟାସ୍, ଫାଶୀରଜ୍ଜୁର ଭିଡ଼ ଭିତରେ
ସଜାଡ଼ିବାକୁ ହେବ ପତାକା ।

୮ । ୧ । ୮୦



# ଶାନ୍ତି ନିକେତନ

'ନିକେତନ' ଅଛି, ନାହିଁ ତ 'ଶାନ୍ତି', ନାହିଁ ତମେ କବିଗୁରୁ,
ଉପରେ ବିରାଜେ ଶାନ୍ତ ଆକାଶ, ନିମ୍ନେ ଗହଳ-ତରୁ ;

ଧୀର ସମୀରଣ, ଫୁଲର ସୁରଭି
ଗୃହରନ୍ଧ୍ରେ ଭରି ଆହେ ମହାକବି !

କୁସୁମ-ହାସିନୀ ବଙ୍ଗବାଳାର ଅଳସ ମରାଳ ଗତି
ନୂତନତା ହୀନ ଜୀବନର ସୁଅ, ପ୍ରତିଟି ଦିବସ ରାତି ।

ଅଗଣିତ କତ ଏଠି ଆଖି ମେଲେ ପତ୍ରପୁଞ୍ଜ କୋଳେ
ବିହଗ ମଧୁର କଳଗୀତି ଶୁଭେ ଲତାର କୁଞ୍ଜ ତଳେ ;

ଇଏ ଏକ ଶ୍ରେଷ୍ଠ ଶାନ୍ତ ପୃଥିବୀ
ମରମେ ମରମେ ଗଲି ଅନୁଭବି
କିନ୍ତୁ ଜୀବନ ନାହିଁ ଏପେ ହାୟ, ଥିଲେ ବି ତ ସହଜିଆ,
ନାହିଁ ସଂଗ୍ରାମ, ନାହିଁ ସଂଘାତ; ନାହିଁ ପ୍ରାଣ ଦିଆ ନିଆ ।

ଗୋଟିଏ ଛନ୍ଦେ ଜୀବନର ବୀଣା ଏଠି ନିତି ଉଠେ ଥରି
ଆସି ଏ ମୁଲକେ ସ୍ତମ୍ଭିତ ମୁହିଁ ହୋଇଅଛି ପଥଗୃହୀ ;

ଏଇ ପୃଥିବୀର ପାରି ହୋଇ ସୀମା
ଦିନେ ଯେଉଁମାନେ ଆସିଥିଲେ ଜନା
ସେମାନେ ତ ଆଜ ପଙ୍ଗୁ, ନିଥର, ବାସ୍ତବତାରୁ ଦୂରେ,
ଆକାଶ-କୁସୁମ ତୋଳନ୍ତି ବୁଲି ସ୍ୱର୍ଗର ବଗିଚୁରେ ।

ଏଠି ଶ୍ମଶାନର ଶାନ୍ତି ବିରାଜେ ନୀରବ ନିଶୂନ ସବୁ
ରସାତଳେ ଯାଉ ଦେଶ ବା ସମାଜ, ଦିବାରାତି ଉବୁଟୁବୁ—

'ବିଶ୍ୱପ୍ରେମ'ରେ କୁମାର-କୁମାରୀ,
ଗୃହସ୍ଥଗୃହିଣୀ, ନର ଆଉ ନାରୀ

ବିଶ୍ୱକବି ହେ, ଏହି କି ତମର ସେହି ଆଦର୍ଶ ଲୀଳା ?
ପୌରୁଷ ତଳେ ରମଣୀର ଏକ ସଲଜ କୁଣ୍ଠାଭରା !

ହୃଦୟୁ ହୃଦୟୁ ଭିତରେ ଦୂରତା ଦେଖି ପାଏନାହିଁ ଆଖି
କାହିଁ ମାନବିକ ପ୍ରେମ ଓ ପ୍ରଣୟ ? କେଉଁଠି ପାରୁନି ଦେଖି ;

ପଶୁତାର ସାପ ଟେକେ ଧୀରେ ଫଣା
ଧିକି ଧିକି ଜଳେ ଦେହଜ-କାମନା
ଦେଶ ଓ ଜାତିର ଚିନ୍ତାତ ନାହିଁ, ଦୁନିଆ ଜଳୁଛି ଯେବେ,
ଧରଣୀର କୋଟି ନିଃସ୍ୱ ମାନବ ଶେଷ ରଣ-ଉତ୍ସବେ—

ମଉ ଯେବେଳେ, ଦିଗେ ଦିଗେ ଉଡ଼େ କୋଟି କ୍ରାନ୍ତିର ବାନା
ଯୁଗଯୁଗାନ୍ତ ଅତ୍ୟାଚାରର ଶୁଝିବା ପାଇଁ କି ଦେ'ଣା

କ୍ଷୁଧିତ ଯେବେଳେ ମାଗଇ ଅନ୍ନ
ବେକାର ବାହିନୀ ମାଗଇ କର୍ମ

ଦୁନ୍ଦୁଭି ମାଟେ ଯେବେଳେ ଆଘାତ, ମୁକ୍ତି ମାଗୁଛି ଦେଶ,
ସେତେବେଳେ ଏଠି ଦେଖୁଛି ଆସି ମୁଁ ଦଳଟେ ନିରୀହ-ମେଷ ।

ଭୁଷଣ୍ଡୀ କାକ, ଅମଙ୍ଗଳର ମାରବ ଦେଖଣାହାଣ୍ଡି
ଅଙ୍ଗୀକାର ଠୁଁ ଦୂରେ ବହୁଦୂରେ ଦଳେ ବାମା, ବାମାଗୃହୀ ।

ତମ କବିତାର ଗଣ୍ଠିର କବର
ନିତି ଖୋଲାହୁଏ ସତ୍ୟ-ଶିବର
ସଉଁନ୍ଦର୍ଯ୍ୟିଠା ସ୍ତବ୍ଧ, ନଥର, କବି ମୁଁ ରୁଦ୍ଧଶ୍ୱାସ
ଅପୌରୁଷର ଛବି ଦେଖି ଦେଖି ପାଞ୍ଚୋଟି ଦିନ ଶେଷ ।

ଘନାଇ ଆସେ ମୋ ବିଦାୟ ଲଗନ, ଡାକେ ବହୁଦୂର ପଥ
ଡାକେ ଝଡ଼ବାତ, ମଣିଷର ଜାତ, ସଂଗ୍ରାମ-ସଂଘାତ ;

ଡାକେ ମୋତେ ଗଣ-ଗଙ୍ଗା ମୁହାଣ
ଡାକଇ ହାତୁଡ଼ି ଶାବଳ ନିହାଣ
କାରଖାନା ଆଉ ଖଣିର ଗର୍ଭୁ ଆସଇ ନିମନ୍ତ୍ରଣ,
ସେଇଠି ଅଛି ମୋ ମହାକାବ୍ୟର ମହାର୍ଘ ଉପାଦାନ ।

ମୋତେ ଏ ଜୀବନ ଲାଗୁନାହିଁ ଭଲ ପୂଜ୍ୟ ହେ କବିଗୁରୁ !
ବେରସିକ ପରି ଯାଉଛି ମୁଁ ଫେରି ନୂଆ 'ହଲଉଡ୍' ହାରୁ ;

ଭଲପାଏ ମୁହିଁ ଜୟ-ପରାଜୟ
ତା ଭିତରେ ଯଦି ଘଟେ ମୋ ବିଲୟ
ସେହିତ ଶାନ୍ତ କାନ୍ତିବାନ୍‌ର, ନାହିଁ କିଛି ଦରକାର,
ବିଦାୟ ଘେନୁଛି ତବ ସ୍ମୃତିପୀଠୁଁ, ଘେନ ମୋ ନମସ୍କାର ।

ଇଣ୍ଟର ନ୍ୟାସନାଲ ଗେଷ୍ଟହାଉସ,
ଶାନ୍ତିନିକେତନ (ପଃ ବଙ୍ଗ)
ତା ୫ । ୧୧ । ୭୯—ରାତି ୧୧ଟା



# ଗାନ୍ଧୀ ଦର୍ଶନ

[ ଗତ ୧୯୭୯ ସାଲ ଅକ୍‌ଟୋବର-ନଭେମ୍ବର ମାସରେ କେନ୍ଦ୍ର-ସାହିତ୍ୟ ଏକାଡେମୀ ତରଫରୁ ସାହିତ୍ୟିକ-ଭାବର ଆଦାନ-ପ୍ରଦାନ ପାଇଁ ପ୍ରାୟ ଏକମାସ କାଳ ପଶ୍ଚିମବଙ୍ଗ ଗସ୍ତ ସମୟରେ ବିଶ୍ୱଭାରତୀ ବା ଶାନ୍ତିନିକେତନର କଳାଭବନ ପ୍ରାଙ୍ଗଣରେ ଥିବା ବିଶ୍ୱବିଖ୍ୟାତ ଶିଳ୍ପୀ ରାମକିଙ୍କର ବେଜ୍‌ଙ୍କ ନିର୍ମିତ ଗାନ୍ଧୀ ମୂର୍ତ୍ତିଟି ଦେଖିବାର ସୌଭାଗ୍ୟ ମୋର ହୋଇଥିଲା । ମୂର୍ତ୍ତିଟି ପ୍ରାୟ ୧୦।୧୨ ଫୁଟ୍ ଉଚ୍ଚ । ଗାନ୍ଧୀଜୀଙ୍କ ଐତିହାସିକ 'ଦାଣ୍ଡିଯାତ୍ରା' କାଳୀନ ଭଙ୍ଗିମା ବହନ କରିଛି ମୂର୍ତ୍ତିଟି । ସେ ଦ୍ରୁତ ପଦକ୍ଷେପରେ ପଥ ଅତିକ୍ରମ କରୁଛନ୍ତି । ବାଁ ହାତରେ କିଛି ନଥିପତ୍ର—ଡାହାଣ ହାତରେ ଏକ ଦୀର୍ଘ ଯଷ୍ଟି । ମୁକୁଳା ଫୁଙ୍ଗୁଳା ଦେହ । ଓଠର ନିମ୍ନଅଂଶଟି ଅସ୍ୱାଭାବିକ ଭାବରେ ସାମ୍ନାକୁ ଲମ୍ବି ଆସିଛି । ମାଟି ଉପରେ ଦୃଷ୍ଟି ନିବଦ୍ଧ । ମୂର୍ତ୍ତିଟି ଧୂସରିଆ କଳା । ଗାନ୍ଧୀଜୀ ଚାଲି ଯାଉଁ ଯାଉଁ ସତେ ଯେପରି ସ୍ତବ୍ଧ ଚକିତ ଭାବରେ ଥମକି ଠିଆହୋଇ ଚିନ୍ତା କରୁଛନ୍ତି ; ପଛକୁ ବୁଲିପଡି ଫେରି ଯିବେକି ? ସବୁଠାରୁ ମଜା ଏବଂ ବିସ୍ମୟର ବିଷୟ ହେଲା ଗାନ୍ଧୀଜୀ ନିଜର ଗୋଟିଏ ପାଦକୁ ଉଠାଇ ମାଟିରେ ପକାଇଲା ବେଳେ ତାଙ୍କ ପାଦତଳେ ରହିଛି ବେକରୁ କଟା ହୋଇଥିବା ଏକ ନରମୁଣ୍ଡ । ଅନଭ୍ୟସ୍ତ ଯେ କୌଣସି ଦର୍ଶକ ଏହି ମୂର୍ତ୍ତିକୁ ଯଦି ସନ୍ଧ୍ୟା ବା ରାତିର ଅନ୍ଧକାର ଭିତରେ ହଠାତ୍ ଦେଖିଦେବ, ତା ଭିତରେ ଏକ ଭୌତିକ ଆତଙ୍କର ସଞ୍ଚାର ହେବ । ଏହିପରି ଏକ ଆତଙ୍କର ଫଳଶ୍ରୁତି ହେଲା ଏଇ କବିତାଟି......]

—ରବି ସିଂ

ତମର ଏ ଧାର୍ଯ୍ୟମୂର୍ତ୍ତି, ପଥ ଅତିକ୍ରମର ଭଙ୍ଗିମା
ହାତେ ଏକ ଦୀର୍ଘ ଯଷ୍ଟି, ତମେ କହୋ ସେହି 'ମହାତମା' ?

ଆଗକୁ ପଡ଼ିଛ ଝୁଙ୍କି, କେଉଁ ଦିଗେ ଏ ଯାତ୍ରା ତମର ?
ନଭଶ୍ଚୁମ୍ବୀ, କୃଷ୍ଣକାୟ କଏ ତମେ ମୁଣ୍ଡିତ ଫକୀର ?

ଦିବସର ରୌଦ୍ରଦାହେ, ରଜନୀର ଅନ୍ଧକାରେ ହିମେ
ପ୍ରାବୃଟର ବାରିଧାରେ ଏହି ମୁକ୍ତ ପ୍ରାନ୍ତରେ ମଜ୍ଜନେ—
ଯାହାର ବିରତ୍ତ ଟାଣି କି ଭାବୁଛ ହୋଇଯାଇ ଠିଆ ?
ଜୀବନ୍ତ ପିଶାଚ ସମ ଚକ୍ଷେ ତବ ଜଳେ ମୃତ୍ୟୁ-ନିଆଁ ।

ହେ ପ୍ରେତ-ପଥିକ !

ହେ ବିଭତ୍ସ, ହେ ଦୁର୍ବୋଧ, ଆହେ ଅଗ୍ନିମୁଖ !
ତମରି ସମ୍ମୁଖେ ଆସି ଯେତେବେଳେ ହେଲି ମୁହିଁ ଠିଆଃ
ଥରିଗଲା ହୃତ୍‌ପିଣ୍ଡ, ମୁଣ୍ଡ ମୋର ଘୂରିଗଲା ଆହା !

କିଏ ତମେ ଶ୍ମଶାନର ଜୀବ ?

ତମେ କି ମୃତ୍ୟୁର ଦୂତ, ଏ ଦେଶକୁ କରିଅଛ କ୍ଳୀବ ?
ଜାତୀୟ ଜୀବନ ମଧ୍ୟେ ପଶିଯାଇ ଦୁଷ୍ଟକୀଟ ସମ
ଯେନ ଏକ ବାହ୍ୟରୂପ ଅନ୍ତରକୁ କରିଛ ଦଂଶନ ।

ପକାଉଁ ଦକ୍ଷିଣପାଦ ଅତର୍କିତେ ଯାଇଛ ଥମକ୍‌
ପାଦତଳେ ନରମୁଣ୍ଡ—ନିଜେ ନିଜ ସ୍ୱରୂପକୁ ଦେଖି
ହୋଇଯାଇ ସଚେତନ ପିନ୍ଧି ପୁଣି 'ଅହିଂସା'ର ମୁଖା
ଭାବୁଛ ପଳାଇ ଯିବ ନିରୁଦ୍ଦିଷ୍ଟ ପଥେ ଏକା ଏକା !

ପଳାୟନ ପଥରୁଦ୍ଧ, ସମ୍ମୁଖରେ ଜନତାର ଭିଡ଼
ଦେଶବ୍ୟାପୀ ହାହାକାର, ହିଂସା ଆଉ ଅସତ୍ୟର ମେଡ଼ ।

ହତ୍ୟା, ଖୁନ୍, ଜାଲିଯାତି, ଅତ୍ୟାଚାର, ଶୋଷଣର ଫଣା
ମଣିଷ ପାରିନ ଶୁଝି ନରସୃଷ୍ଟ-ନରକର ଦେ'ଣା ।

ବଞ୍ଚିବାର ବାଟନାହିଁ, ଅଧିକାର ନାହିଁ ମରିବାର
ପାପଘାଟି ଏ ଭାରତ ବୃନ୍ଦାବନ ମହା ଦୁର୍ମତିର ।

ତମ ପ୍ରବର୍ତ୍ତିତ ସେହି 'ଅହିଂସା'ର ହିଂସ୍ର ଭୂମିକାରେ
ଅନ୍ଧାର ଗାରଦ ଆଉ ତାଜା ଗୁଳି ଅଭିନୟ କରେ ।

ଶ୍ୱେତ-ଶଇତାନ-ଦତ୍ତ 'କଇଜର୍' ହେ ମେଡାଲ୍‌ଧାରୀ, (୧)
ଏ ଦେଶର ପୌରୁଷକୁ ବାରବାର ହତ୍ୟା କରି କରି
ତଥାପି ମେଣ୍ଟିନି ଆଶା ? ତୃଷାତୁର ହେ ରକ୍ତ ପିପାସୁ,
ବୀରବଂଶ ଛିନ୍ନମୂଳ, ଆମେ ସବୁ ହୋଇଅଛୁ ଖାସୁ ।

ଯାହାକୁ ଡରୁଛ ତମେ ଶ୍ରେଣୀହୀନ ବିପ୍ଳବୀ ଭାରତ,
ଯା'ର ସତ୍ତା ବାରବାର ଦର୍ଶନକୁ ତବ ପଦାଘାତ—
କରିଅଛି ଅହରହ, ନିକଟରେ ତାର ସ୍ଥୂଳ ରୂପ
ଯା'ର ଅନ୍ୟନାମ ହେଲା ବିପ୍ଳବର ଶ୍ରମକାନ୍ତ ରୂପ ।

ଆକାଶରେ ବାରୁଦର ମେଘ,
ଅଗ୍ନିର ତରଳ-ବନ୍ୟା ମଣିଷର ଖର ଅଗ୍ରଭାଗ ;
ଯଦିଚ ହୋଇଛି ସୁରୁ ଦେବକୀର ପ୍ରସବ ଯନ୍ତ୍ରଣା,
ଆକାଶରେ 'ଘୃଣିମେଘ', ଫେନଚୂଡ଼ ଯମୁନାର ଫଣା
ଯଦିଚ ଫୁତ୍କାର କରେ, ତଥାପିତ ଅଷ୍ଟମ ଗରଭ,
ଜନ୍ମିବାକୁ ଅଛି ଡେରି ବିପ୍ଳବର ଲୋହିତ ଶୈଶବ ।

ଦେଖ ଦେଖ 'ମହାତମା' ଦାଉ ଦାଉ ଜଳେ ଜତୁଗୃହ,
ଲଢ଼େ କର୍ଣ୍ଣ, ଅଭିମନ୍ୟୁ—ଭାଙ୍ଗିନାହିଁ କୌରବର ବ୍ୟୂହ ।

ହୁଅନି ଦୁଶ୍ଚିନ୍ତାଗ୍ରସ୍ତ
ହେ ଜୀବନ୍ତ ବରଫ-ମଶାଲ,
ଶେଷ ହୋଇ ଆସେ ଦେଖ
ଦିନକାଳ କ୍ଲୀବ ଦର୍ଶନର ।
ତମରି ସେ ମନପଶୁ
ଭିତରର ଅସଲ ଚେହେରା
ଶାନ୍ତିନିକେତନ ଏହି
ପ୍ରାନ୍ତରରେ ପଡ଼ିଅଛି ଧରା ।

(୧) ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ କାଳରେ 'ବୁଅର ଯୁଦ୍ଧ' ବେଳେ ଗାନ୍ଧୀଜୀ "କିଙ୍ଗ୍ ହର୍ଡ଼" ମେଡାଲ ପ୍ରାପ୍ତ ହୋଇଥିଲେ ।

ସବୁଦ୍ୱାର ଶିଳ୍ପୀର ତୁଳିକା
ତମକୁ କରିଛି ବନ୍ଦୀ
ତା ଶିଳ୍ପର ବନ୍ଦୀଶାଳେ ଏକା ।

ଶିଳ୍ପ ଯଦି ଯାଏ ମରି, ବିପ୍ଳବର ଉତ୍ତରାଧିକାର
ଚେତନାର ବିନାଶରେ ଭାଙ୍ଗିପାରେ ତବ କାରାଗାର ।

ତା ପରେ ତମେ ତ ମୁକ୍ତ ହୋଇପାର, କିନ୍ତୁ ଅସମ୍ଭବ
ଶିଳ୍ପେ ମୁଁ ପ୍ରଣାମ କରେ, ଶିଳ୍ପୀର ମୁଁ ପାଠକରେ ସ୍ତବ ।

ଶାନ୍ତିନିକେତନ
ତା ୫ । ୧୧ । ୭୯—ସନ୍ଧ୍ୟା



# ଇତିହାସକୁ ତୋ ପଚାର ଭାଇରେ !

ଇତିହାସକୁ ତୋ ପଚାର ଭାଇରେ
କହିବ ସେ ମୁହଁ ଖୋଲି
ହେ ବାଣପୁରର ବିପୁଳ ଜନତା
କାହିଁ ତମ ଚରବାଗ ?

କାହିଁ ଜନତାର ବୀର ସେନାପତି
କୃତ୍ତିବାସ ପାଟଶାଣୀ ?
ପଚାରିଲେ ଆଜ କହିବ ଚିଲିକା
ଆଣ୍ଡାମାନ କଳାପାଣି ।

କହିବ ସେ କଥା ଏଇ ବିଲ-ବଣ
ଘୁମୁସର, କନ୍ଧମାଳ
କିଏ ନେଲା ତୋର ପୁରୁଷ ପଣିଆ
ହାତୁଁ କାଢ଼ି ହତିଆର ?

ତୋର ବାପ ଅଜା ବଇରି ରକତେ
ମାଟି କରିଥିଲେ ନାଲି
ଇତିହାସକୁ ତୋ ପଚାର ଭାଇରେ
କହିବ ସେ ମୁହଁ ଖୋଲି ।

ଏଇ ଘଣ୍ଟଶିଳା ଘାଲେର ପାହାଡ଼
ପଥର ଚପୁଡ଼ ଦେଲେ
ଝୋପା ଝୋପା ତାଜା ଲୁଣିଆ ରକତ—
ବୋହ୍ମି ମାଟି ଭିଜବରେ ।

ସେ ତାଜା ରକତ ପାଇକ ଯୁବାର
ବହୁ କାଳୁ ଅଛି ଜମା
ପଚ୍ଛରିଲେ ଆଜ କହିବ ସେ କଥା
ନୟାଗଡ଼ ବନସୀମା ।

ପାଇଟିଆଳ ସେ ମାଳ ଆଦିବାସୀ
ପାଇକ, ଚଷାର ଦଳ
ଆପଣା ଭିତରୁ ବାଛିଥିଲେ ରଜା
ସାକ୍ଷୀ ଅଛି ବାଣପୂର ।

ତା'ର ବାପ-ଅଜା, ଚଉଦ ପୁରୁଷେ
କେନେ କେ ନ ଥିଲେ ରଜା
ସେଦ୍ହି ଅପାଠୁଆ ପଞ୍ଝୁଆ ନାହାକେ
ବଜାଇ ବିଜୟ ବାଜା—

ରାଜ-ସିଂହାସନେ ଅଭିଷେକ କଲେ
ଲଡ଼ୁଆ ସରବହରା
କୃତ୍ତିବାସଙ୍କୁ ତ ସେନାପତି ରୂପେ
ସେ ରଜା ବରଣ କଲା ।

କୋଟିଏ ପାଇକ ମଶାଲେ ଜଳାଲା
ମୁକତିର ହୁତାଶନ
ଜାଳିଦେବା ପାଇଁ ଭାରତ ଭୂଇଁରୁ
ଫିରିଙ୍ଗି ଗୋରା ଶାସନ ।

ଆଗରୁ-ପଛରୁ, ଉତ୍ତରୁ-ଦକ୍ଷିଣୁ
ଫାଟି ପଡ଼ୁଥିଲା ଝଡ଼
ଇତିହାସ କହେ ମଶାଣି ମାଟିରୁ
କଥା କହୁଥିଲା ମଡ଼ ।

ମରଣ ସାଥିରେ ଜୀବନଟା ସେବେ
କରୁଥିଲା ମୁକାବିଲା
ସାକ୍ଷୀ ଅଛୁ ଏଇ ଭଲେର ପାହାଡ଼
ମହାମେରୁ ଘଣ୍ଟଶିଳା ।

ଗୋରା ଫଉଜର ତୋପ-କମାଣକୁ
ଉପହାସ କରି କରି
କ୍ରୁଦ୍ଧ ପଡ଼ୁଥିଲେ ପାଇକ ସେନାନୀ
ମୁକତିର ନେତ ଧରି ।

ଇତିହାସ ବୁକେ ଲେଖି ଦେଇ ଗଲେ
ପହିଲ ମୁକତି-ଗାଥା
ତନ ଧନ ପାଇଁ ଭୋଗିଥିଲା ଏଇ
ବାଣପୁର ସ୍ୱାଧୀନତା ।

ବଇରି ରକତେ ପାଇକ-ଦୁଲଣୀ
ବାନ୍ଧୁଥିଲା ତା'ର ବେଣୀ
ତା' ଓଦା ବେଣୀରେ ତାରା-ଫୁଲ ଥିଲା
କୃତ୍ତିବାସ ପାଟଶାଣୀ ।

ପାଇକିଆଳର ବକଳ ଅନ୍ତର
ତା' ନାମେ ଶପଥ ଘେନ
ଏ ଜାତିର ସିଏ ପ୍ରଥମ ଶହୀଦ,
ସାମରିକ-ଅଭିଯାନ ।

ସେହି କାଳଥିଲା ଫିରିଙ୍ଗି ଭାରତେ
ମୁକଦ୍ଦର ଘାପାବଳୀ
ଇତିହାସକୁ ତୋ ପଗ୍ରର ଭାଇରେ
କହିବ ସେ ମୁହଁ ଖୋଲି ।

କେତେ ଯୁଗ କେତେ ବରଷ ଯାଇଛି
ପୁରୁଷ ପୁରୁଷ ବତ
ଯାଇଅଛି ଗୋରା, ଆସିଛି କାଳିଆ
ଘନାଇଛି କଳା ରାତି ।

ଚିରକାଳ ତୁହି ଥିଲୁ ଦାର ଜାତି
ଫିରିଙ୍ଗି କରିଲା ଖାସୁ
କାଢ଼ି ନେଲା ତୋର ହାତୁଁ ତରବାରି
ପୁରୁଷ ପଣିଆ ଦେଖୁ ।

ସ୍ୱାଧୀନ ହେଲେ ବି ହାତକୁରେ ତୋର
ହତିଆର ନ ଫେରିଲା
ଜମିର ମାଲିକ ହେଲୁ ନାହିଁ ଚଷା
ହେଲୁ ସିନା କୁଲି, ଶଳା ।

କୁଠା ଖଣ୍ଡକୁ ଯେ ଦ' ଖଣ୍ଡ ନ କଲା
ହେଲା ସେ କଳ ମାଲିକ
ତା'ର କଳ ଘରେ ହେଲୁ ତୁ କୋଇଲା
ଜଳିଲୁରେ ଧକ ଧକ ।

ପାଟି ଫିଟାଇଲେ ଲାଠି ମାଡ଼ ଖାଇ
ଫାଟକରେ ଗଲୁ ଗଡ଼ି
ଜମି ନେଲା ସାହୁ; ସୁଧଖୋର-ରାହୁ
ମାଇପ ହାତରୁ ଚୁଡ଼ି ।

ସବୁଜ ବିପ୍ଳବ ଗୁଳିରୁ କୁଆଡ଼େ
ବିଲେ ନାଚେ ମରୀଚିକା,
ଲେଭି ଧାନ ପାଇଁ କପାଳରେ ତୋର
ଗୁଳିଘାତ-ଲହୁଟୀକା ।

ଛଅ ଇଞ୍ଚ ଛୁରୀ ପାଖରେ ରଖିଲେ
ହେବୁ ଡକାଇତ, ଖୁନୀ
ଥାଆନ୍ତା ଯଦି ତୋ ପାଇକ ବାହିନୀ
କୃତ୍ତିବାସ ପାଟଣାଣୀ ।

ପୁଣି ଆଉଥରେ ନୂଆ ଅଭିଯାନ
କରି ଥାଆନ୍ତା ସେ ସୁରୁ,
ଭିଟେଲର ଶିଖରୁ ମେଘର ମାଦଳ
ବାଜଥାନ୍ତା ଗୁରୁଗୁରୁ ।

ଗୋଟିଏ ଗୁଳିର ଜବାବ ଛଅଟି
ଗୁଳିରେ ଥା'ନ୍ତା ସେ ଦେଇ
ତମେ ସେ ଖାରର ନାତି-ଅଣନାତି
ଜ୍ଞାତି ଓ କୁଟୁମ୍ବ ଭାଇ ।

ମାଟିର ଜଠର ବିଦାରି ଖୋଜରେ
କାହିଁ ତା'ର ତଲୁଆର
ସାରା ଦୁନିଆର ଗରିବ ଯେତେରେ
ଗୋଟିଏ ତମରି ଦଳ ।

ସେହି ତଲୁଆରେ ଜଂକ୍ ଲାଗିଥିବ
ଦେଖିବୁରେ ଭାଇ ଯଦି
ଶାଣ ଦିଅ ତାକୁ ଆଜ ଛେଦିବାକୁ
ସାଆନ୍ତିଆ-ବୁନିଆଦି ।

ଜଂକ୍‌ଲଗା ସବୁ ତରବାରୀ ଭାଙ୍ଗି
ଗଡ଼ରେ ବନ୍ଧୁକ ବୋମା
ଅତୀତର ଯେତେ ହେ ବୀର ପାଇକ
ହୋଇ ଯାଅ ଲାଲ ସେନା ।

ନ ହେଲେ ପଡ଼ିବ ନସ୍ଥା ରଘୁପତି
ଯୂପକାଠେ ସବୁ ବଳ
ଇତିହାସକୁ ତୋ ପତ୍ରର ଧାଇରେ
କହିବ ସେ ମୁହଁ ଖୋଲି ।

ମାରବେ ଗୁହିଁଛି ନେଳଆ ଚାଲକା!
ନିଦାଘ ଗୁହାଣି ତାର
ସେହି ଗୁହାଣିର ଭାଷା ତୁ ପଢ଼ିବୁ
କହ କେବେ ବାଣପୁର ?

ତୋର ଅତୀତର ଆଗ୍ନର ବଗ୍ନର
ବୁନିଆଦ ଥିଲା ଯାହା
ଆଜି ଥରେ ତାକୁ ପଢ଼ିବୁ କେବେରେ
ଉଠାଇବୁ ଖାମ ବାହା ?

ଝଡ଼ର ବାହିନୀ ଦନେ ଘେରିଥିଲା
ଫିରିଙ୍ଗି ପୁଲିସ ଥାନା
ଲୁଟି କରିଥିଲା ଫିରଙ୍ଗି ଟ୍ରେଜେରୀ
ବୀର କୃତିବାସ ସେନା ।

ଅଧୀନ ଦେଶକୁ ସ୍ୱାଧୀନ କରିବା
ପାଇଁ କାଳ-ବଇଶାଖୀ,
ପଡ଼ିଥିଲା ଛିଡ଼ି, ଖାମ ଘଡ଼ଘଡ଼ି
ଇତିହାସ ତାର ସାକ୍ଷୀ ।

କୁକୁରର ପ୍ରଭୁ ଭକ୍ତ ପାଇଁରେ
ସବୁ ଯାଇଥିଲା ସରି,
ନିମକ ହାରାମ ଜାତିର ପାଇଁରେ
ଏ ଜାତି ମୁହଁରେ କାଳି—

ଯିଏ ବୋଲଥିଲା, ବଂଶ ତାହାର
ଆଜ ବି ଅଛିରେ ଦେଖ
ଘୃଣାକର ତାକୁ, ମୁହଁରେ ତାହାର
ଛେପ ପକାଇବା ଶିଖ ।

ହେ ପାନଦୋକାନୀ, ଶ୍ରେଷ୍ଠ ବ୍ୟବସାୟୀ
ବାଲୁଗାଆଁ ବଜାରର
ବାଟର ବାଟୋଇ, କ୍ଷେତ ମଜୁରିଆ
ନାଉରିଆ ଚିଲିକାର ।

ହେ ବାଣପୁରର ଜନସାଧାରଣ
ଭୁଲିଗଲ କେଲେ ବାଟେ
ବିଶ୍ୱାସ ଘାତକ ବଂଶ ନାମରେ
ଦେଇଯାଅ ଗୋଇଠାଟେ ।

ଭୁଲନା ଭୁଲନା ସେଇ ବେଇମାନ
ନୟାଗଡ଼ ରଜା କଥା
ଯା ପାଇଁ କି ଫାଶୀ କାଠେ ଝୁଲିଥିଲ
ବୀର କୃତ୍ତିବାସ ମଥା ।

ନେଳିଆ ହୋଇଛି ଘୃଣାରେ ସେ ପାଇଁ
ଦୁଃଖିନୀ ଚିଲିକା ପାଣି
ବୁକେ ତା ଜମିଛି ଜଡ଼ତାର ପଙ୍କ
ଦେଖି ଏଇ ବେଇମାନି ।

ଛୁଟା ତୋର ଘୋଡ଼ା ପତାକା ତୋ ଉଡ଼ା
ସରବହରର ଥାଟ
ଲଢ଼ାଇ ପିନାରେ ସବୁ କଷଣରୁ
ମୁକତି ପାଇବା ବାଟ ।

ଏଇ କଥା ତୋତେ ଯାଇଛି ଶିଖାଇ
ସେନାପତି କୃତିବାସ
ହେ ବାଣପୁରର ବୀର ଜନଗଣ
ଏକଜୁଟ ହେବା ଆସ ।

ଜନମରୁ ଥିଲା ନେଳଆ ଚଲକା
ରକତରୁ ବଳ ନାଲ
ଇତିହାସକୁ ତୋ ପଶ୍ଚର ଭାଇରେ
କହିବ ସେ ମୁହଁ ଖୋଲି ।

୬ । ୧୨ । ୩ । ୭୫



[illegible]

# ବନ୍ଧୁକ

ବନ୍ଧୁକ, ତମେ ଭଡ଼ାଟିଆ ହାତେ
ଏଇ ଏ ଭାରତେ
ହୋଇଛ କେନ୍ଦ୍ରୀଭୂତ,
ସେ ପାଇଁ ସତ୍ୟ ମୂକ ଓ ବଧିର
ଧୃଷ୍ଟତା ହୋଇଛି ସାର୍ଥୀ ମଣିଷର
ତମେ ତା ଆଗରେ ଖାଲି ରୂପକଥା
ରୁଦ୍ଧ ମୁକ୍ତପଥ ।

ବନ୍ଧୁକ, ତମେ ଲୁଟିଖିଆ ହାତେ
ଯେତେ ଦିନ ଯାଏ ଥାଅ,
ସେତେଦିନ ଧରି ମରେ ଖଟିଖିଆ
ମାଟିରେ ମିଶେ ତା
ଝାଳ, ଲହୁ ଆଉ ଲୁହ ।

କଳଙ୍କାକୁ ତାର ଝୁଣଇ ଶୋଷକ
ଅଭାବ, ବେକାରୀ ଦୁଃଖ ଆଉ ଶୋକ
ନାନା ଜାତି, ନାନା ଦେଶବାସୀ ଯେବେ
ଏକାଠି ହେବାକୁ ଯାଏ,
ବନ୍ଧୁକ, ତମ ଭିତରେ ମରଣ
ଉଠି ସାବାଳକ ହୁଏ ।

ବନ୍ଧୁକ୍, ତମେ ନିର୍ଜୀବ ହୋଇ
ଜୀବନକୁ କର ଶେଷ
ତମର ଖୋଳରେ ସାରା ଭାରତଟା
ହୋଇଛି ନିରୀହ ମେଷ;
ତମର ଗୁଳିର ଧୂମ-ଚୁମ୍ବନ
ନିମିଷକେ ସୃଜେ ମହା ଶମଶାନ
କୋଟି ଶହୀଦର ତମେ ତ ଜନମା
ତମେ ତ ଅଗ୍ନିମାତା
ମଣିଷକୁ ତମେ କର ପରାଧୀନ
ଦିଅ ପୁଣି ସ୍ୱାଧୀନତା ।

ତମର ଭିତରୁ ରାଜନୈତିକ-କ୍ଷମତା ଜନ୍ମନିଏ
ଗୋଟିଏ ଶ୍ରେଣୀକୁ ସେଥି ସେ କ୍ଷମତା
ଅବିରତ ପୀଡ଼ା ଦିଏ ।

ଯେଉଁ ଜାତି, ଯେଉଁ ଦେଶଟା ଉପରେ
ତମର ନିୟନ୍ତ୍ରଣ—
ହୁଏ ଦୃଢ଼ମୂଳ
ପୁଣି ବେଳୁବେଳ
ତମର ଉହାଡେ
ଦସ୍ୟୁର ଦଳ
ଉଡ଼ାଏ ତାହାର ଏକଛତ୍ରର
ନାଜୀ ସ୍ୱସ୍ତିକ୍ କେତ
ବନ୍ଧୁକ୍, ତମେ ବିପୁଳ ଜନତା
ହାତକୁ ଆସିଲେ
ଉଜ୍ଜ୍ୱଳେ ନୂଆପଥ ।

ପ୍ରତିଟି ମଣିଷ ମନ-ଉପକୂଳେ
ମୁକ୍ତିର ପୋତ ଲଙ୍ଗର ଢାଳେ
ନବ-ଚେତନାରେ ସ୍ପର୍ଶିତ ହୁଏ
ବଦଳିତ ନରନାରୀ
ଜାଗିଉଠେ ମୁକ୍ତି, ମହା ବିପ୍ଳବ
ଧୀରେ ଆସେ ଅବତରି ।

ତମରି ମଧ୍ୟେ ଅଛି ଦାସତ୍ୱ, ଅଛି ମୁକ୍ତିର ଗାଥା
ପିନ୍ଧାଇ ପାର ବନ୍ଧନ-ବେଡ଼ି, ଦେଇପାର ସ୍ୱାଧୀନତା ;

ଶୟନେ-ସପନେ, କ୍ଷେତେ-ପଥେ-ରଣେ
ବାହାରେ-ଭିତରେ, ମନେ ଆଉ ପ୍ରାଣେ
ତମରି ସତ୍ତା ଯେ ଯାଏଁ ଦେଇନି ଧରା,
ମଣିଷ ହେବନି ମୋଟେ ବନ୍ଧନହରା ।

ତେଣୁ ବନ୍ଧୁକ, ଭାରତ ମାଟିର
କୋଟି କୋଟି ହାତେ ଆସ
ତବ ଆଗମନେ
ଅନ୍ଧାର ହେବ ଶେଷ ।

ଭୀରୁ-ଭାରତର
ଘେନ ଆବେଦନ,
ଜୀବନ ପାଇଁକି
ଆସ ହେ ମରଣ !
ତମରି ବାରୁଦ-ମେଘର ଉହାଡ଼ୁ
ଫୁଟାଅ ରକ୍ତତାରା
ରକ୍ତତୀର୍ଥେ ପରିଣତ ହେଉ
ଭାରତ ବସୁନ୍ଧରା ।

ଭୁବନେଶ୍ୱର
ତା ୨ । ୭ । ୮୦— ସନ୍ଧ୍ୟା



# ଆସାମ

'କର୍ଫ୍ୟୁ'ର  ନୂଆ  କଳା-ବ୍ଲାଉଜକୁ  ଆସାମ  ଦେଇଛୁ  ଚିର
ତାକୁ  ରଫୁ  କରେ  ବ୍ୟାରିକ୍‌ର  ପୋଷା  ଭଡ଼ାଟିଆ  ମିଲିଟାରି—
ସୁତୀକ୍ଷ୍ଣ  ସଙ୍ଗୀନେ,
ଜଳେ  ଉତ୍ତର-ପୂର୍ବଭାରତ  ଦେହେ,  ମନେ  ଆଉ  ପ୍ରାଣେ ।

ଜଳେ  ମିଜୋରାମ୍,  ଜଳେ  ମଣିପୁର୍,  ତ୍ରିପୁରା  ଓ  ନାଗାଭୂମି
ବ୍ରହ୍ମପୁତ୍ର-ଉପତ୍ୟକାରେ  ବିଦ୍ରୋହ-ମଉସୁମୀ
ବଦଳାଇ  ଯେତେ  ଶୀର୍ଣ୍ଣଘାସକୁ  ଦେଇଛୁ  ଜୀବନ୍ୟାସ
ଏ  ନବଜୀବନେ  ମରଣ-ବଧୂର  ଉଠିଛୁ  ନାଭିଃଶ୍ୱାସ  ।

ମହାଭାରତର  'ବର୍ଲିନ'  ରାଜଧାନୀ  ଦିଲ୍ଲୀର  ମଥା—
ଘୁରେ  ଦିବାରାତ୍ର,  କିଏ  ଶୁଣାଇଲା  ନବଚେତନାର  କଥା ?
ଦମିତ  ଯେ  ସବୁ  ଜାତିର  ସତ୍ତା  କିପରି  ଟେକିଲା  ଫଣା ?
କେଉଁଠି  ଥିଲା  ଏ  ଜନ-ସମୁଦ୍ର ?  ଏକ  ଗର୍ଜନ  ଶୁଣା !

ହିମାଚଳଗୁମ୍ଫା-ଗର୍ଭ  ବିବରୁ  ମୁକ୍ତିବଳା  ପାଇଁ  ଡାକ
'ସାତ  ଭଗିନୀର  ମୁକ୍ତିବାହିନୀ'  ହିଏ  କି  ଦୁର୍ବିପାକ !
ନାନାଜାତି,  ନାନା  ଭାଷା-ସଂସ୍କୃତି,  ଯା'କୁ  ହିନେ  ଇଂରେଜ—
ଗୁମ୍ଫିତ  ଥିଲା  ସଙ୍ଗୀନ୍  ମୁନେ,  ସେହି  ଗ୍ରନ୍ଥନ  ଆଜ—
ଯଦି  ଛୁଟିଯାଏ,  ଦିଲ୍ଲୀ-ହିମାଳ୍  ହୋଇଯିବ  ଧରାଶାୟୀ
ହିନ୍ଦୀ  ଭାଷାର  ବନ୍ଦୀ  ଶିବିରେ  ରହିବ  କେ  ପାରିବେ  ନାହିଁ ।

ବିରାଟ ଭୂ-ଭାଗେ ସ୍ୱାଧୀନ ଜାତିର ସତ୍ତା ଟେକିବେ ମଥା
ଅଭାବ, ବେକାରି, କରଭାର ମୋର ଅତ୍ୟାଚାରର ଗାଥା—
ଜଳିବ କେବଳ ବହ୍ନି ଭିତରେ ! ଅସହ୍ୟ, ଅସମ୍ଭବ
ଜାତୀୟ ଐକ୍ୟ, ସଂହତିଟାକୁ ଦୃଢ଼ କରିବାକୁ ହେବ ।

ଶୁଣ ପାରିଷଦ, ଭାଟ, ଭଡ଼ାଟିଆ, ପୁଲିସ, ହାକିମ ଦଳ,
ଶୁଣ ପୋଷାବାଘ ମୋ ସେନାବାହିନୀ ଆଗକୁ ତ କୁଦିପଡ଼ !

ଅଗା-ବଗା-ଖଗା ନାଗା, ମିଜୋ, କୁକି, ମେଇତି ଓ ଅସମୀୟା—
ଜାତି-ସତ୍ତାକୁ ସାଫ୍ କରିଦିଅ ଟେକ ଯାଇଫେଲ୍ ବାହା ।

ଖାକିକୁର୍ତ୍ତାରେ ଆସାମ ଧୂସର ହୋଇଉଠେ ଯେତେବେଳେ,
କବିଗୁରୁ, ତମ "ଭାରତ ତୀର୍ଥ" କହୁଛାଟି ସେତେବେଳେ—

ନୂଆ ମନ ନେଇ ପଢ଼େ ମୁହିଁ କବି, ହସି ମୋର ପେଟ ଫାଟେ,
ସବୁ ବାଜେକଥା, ତମ ଭାବାଳୁତା, ସତ୍ୟତା ନାହିଁ ମୋଟେ ।

ଯେଉଁ ଭାରତକୁ "ତୀର୍ଥ" କରିଛ ତାହା ଏକ ପାପଭାଟି,
ବାରଣୂନ୍ୟ ଏ ବିଶାଳ ଦେଶଟା, ତୃଷ୍ଣାୟୁ—ଲଙ୍କ ଘାଟି । ୭

ଏଠି ବିଜୟୀର ତରବାରି ଗୃପେ ସବୁ ହୋଇଥିଲେ ଏକ
ଗଢ଼ି ତ ଉଠିନ ସ୍ୱେଚ୍ଛା ଐକ୍ୟ, କେବଳ ଦାସର ମୁଖ—
ଦେଖି ନାନାଜାତି ଭାଷା-ସଂସ୍କୃତି ହିମାଚଳୁଁ କୁମାରିକା
'ଜାତୀୟ ଐକ୍ୟ' ବନ୍ଦୀଶାଳାରେ ପଶିଥିଲେ ଯାଇ ଏକା ।

ତମରି ଆର୍ଯ୍ୟ, ତମ ଅନାର୍ଯ୍ୟ, ତମରି ଦ୍ରାବିଡ, ଚୀନ୍,
ଶକ-ହୁନଦଳ, ପଠାଣ, ମୋଗଲ ତମରି "ତୀର୍ଥେ" ଲୀନ,
ଭେଦି ମରୁପଥ, ଗିରି-ପର୍ବତ ଯେଉଁମାନେ ଥିଲେ ଆସି,
ସବୁରି ସତ୍ତା ହୋଇଛି ବିଲୀନ, ସଭିଏଁ ଶ୍ମଶାନବାସୀ ।
ଅନାର୍ଯ୍ୟ ପରେ ଆଜିବି ଆର୍ଯ୍ୟ ଚଳାଏ ଅତ୍ୟାଚାର,
ଅପମିତ କବି, ହୋଇନାହିଁ କିଛି ସେହି ଅସମାନ ଭାର ।

ହରିଜନେ ଆଜି ପୋଡ଼ିମାରେ ନିତି ରାମଜନ୍ମ ବ୍ରାହ୍ମଣ,
ଦ୍ରାବିଡ଼ର ନେତା ଆଜିବି ରାବଣ, ଉତ୍ତରେ ନେତା ରାମ ।

ଖଟିଖିଆ ଆଉ ଲୁଟିଖିଆ ଦଳ ଏ ମାଟିରେ ମୁହାଁମୁହିଁ
ତମରି "ଭାରତ ତୀର୍ଥ" ପୋଥିକୁ ଖାଇଛି ଘୋଅଠ ଉଇ ।

ବଢ଼ିଛି ବିଭେଦ, ନାହିଁ ସଦ୍‌ଭାବ, କ୍ଷମତାଲିପ୍ସୁ ଏକ
ନାନା ଜାତି, ନାନା ଭାଷାଭାଷୀ ଏଠି ବହୁଜାତି ନିର୍ବାକ ।

ତମେ ଭାବାବେଗେ ନାଚିଗଲ କବି ମହାନ ଐକ୍ୟତାନେ
ସେଦିନ ସେ ତାନଟା ଅଚଳ-ମୁଦ୍ରା ଆଜି-ଭାରତର ପ୍ରାଣେ ।

ବିଶାଳ ଭାରତ ଗୋଟିଏ ଜନନୀ ନୁହେଁ, କେବେ ନାହିଁ ଥିଲ
ବହୁ ଜନନୀକୁ ବନ୍ଧୁକ ନଳ ଏକଦା ଦେଖାଇ ଥିଲା—
ବିଦେଶୀ ବଣିକ ଇଂରେଜ୍ ଶଇତାନ୍,
ସେଦିନ ଗଢ଼ିଥିଲା "ଭାରତ ତୀର୍ଥ", ତମେ ସେଇଥିରେ ସ୍ନାନ—
କରି, ମହାଖୁସି ହୋଇ ନାଚିଥିଲ, ତମରି ଐକ୍ୟବାଣୀ—
ମୁହେଁ ନାଲ୍ ମାରି ଫୁତ୍‌କାର କରେ ବ୍ରହ୍ମପୁତ୍ର ପାଣି ।

ଆଜି ଉତ୍ତର-ପୂର୍ବ ଭାରତ ଆସାମଟା ମହାତୀର୍ଥ
ନାରାୟଣୀ ସେନା ସାଥେ ମୁକାବିଲା ଏଇଠି କରୁଛି ପାର୍ଥ ।

ନାନାଜାତି ନାନା ଭାଷାର ଭଗିମା ଗଢ଼ି ତୋଳେ ସଂହତି,
ଏଇଠି ଯେବେଳେ ପାହିବାକୁ ଯାଏ ମହା ଦୁର୍ଯୋଗ ରାତି ;
ଅନାଗତ ସେଦିନ ପ୍ରଭାତେ ପ୍ରଣାମ କରେ ମୁଁ ଓଡ଼ିଆ କବି
ଏଠାରୁ ସୂର୍ଯ୍ୟ ସବୁଠିଁ ଉଇଁବ, ବାଜିବତ ଭୈରବୀ ।

ତା ୭ । ୭ । ୮୦



# ଭୋଅଟ - ଭାଲୁ

ପ୍ରତି-ଭୋଅଟରେ ଗ୍ରାମେ ଓ ନଗରେ
କୋଟି କୋଟି ଟାଉଟର,
ନୂଆ ଭଡ଼ାଟିଆ, ନୈତିକତାର ପୁରୁଷ-ବେଶ୍ୟାଦଳ
ଜନମି ଥାନ୍ତି ଝଡ଼ପୋକ ପରି
ହଡ଼ା ବେପାରୀଏ ଏପାରି-ସେପାରି
ଅଦ୍‌ଭୁତ ଦେଶ, ଅଦ୍‌ଭୁତ ଏଇ ଜାତି,
ଧରିଛି ସର୍ବନାଶକୁ ଜାବୁଡ଼ି
ଭୋଅଟ-ଭାଲୁକୁ ଯାଇଛି ହାବୁଡ଼ି
ଭାଲୁ ଅଗନ୍ତର ଗତି ।

ସେହି ଭାଲୁପଛେ ଟାଟା ଓ ବିରଳା ଶେଠ ସାହୁକାର ଦଳ,
ବସ୍ତି ଗୁଣ୍ଡା, ଫକଡ଼, ଜୁଆଡ଼ୀ, ଡାକୁ, ଚୋର, ତସ୍କର ।
ସେ ଭାଲୁ ପଛରେ ଆମେରିକା ରୁଷ୍,
ରୁବଲ୍, ଡଲାର୍, କଳାପୋତା, ଘୁଷ୍
ବିଶ୍ୱ ଶୋଷଣବାଦ ଅରଣ୍ୟ ସେ ଭାଲୁ ଆସିଛି ଉଠି,
ଗୃରିଦ୍ଧଗୁଁ ତାର ଲୋମଶ ହାତଟା
ଏ ଦେଶକୁ ଘେରିଛିଟି ।

ଲୁହାର ଠେଙ୍ଗା, ନଆଁ ହୁଲା ଛଡ଼ା
ଖାଲୁର କବଳୁ ମୁକ୍ତି—
ମିଳିବନି ଜମା କଲେ ତା ସହିତ
ସହାବସ୍ଥାନ, ଚୁକ୍ତି ।

'ଗଣତନ୍ତ୍ର'ର ଖୁଲି ଘୋଡ଼ି ହୋଇ
ସେଇ ଖାଲୁ ଯାଏ ଆସେ,
ତାକୁ ନମାରିଲେ ମୁକ୍ତିସୂର୍ଯ୍ୟ ଭାରତ-ଭାଗ୍ୟାକାଶେ—
ଉଦୟ ହେବନି, ନହେଲେ ଏକାଠି
ଲଢ଼ାଇ ନକରି ନଗଢ଼ିଲେ ଘାଟି
ନ ଧରିଲେ ହତିଆର,
ହେ ମଣିଷ ଯେବେ କରିଥିଲ ତମେ ଅଗ୍ନି ଆବିଷ୍କାର !

ସେହି ସେ ନଆଁକୁ ଜାଳିବାକୁ ଭୁଲି
ଯିବାର ଏଇ ଯେ ଫଳ,
ଆଜି ଥରେ ତମେ ତମରି ଆଦିମ ଗୋଷ୍ଠୀ ଜୀବନ ଗଢ଼ !
ପୁଣି ଗଢ଼ିବାକୁ ସାମ୍ୟସମାଜ
କ୍ଷେତେ ପଥେ ରଣେ ସାଜ ସାଜ ସାଜ
ନିଜ ଇତିହାସ ଲେଖ ନୀତିଦାସ
ଯାହାଟା ହୋଇନି ଲେଖା,
ମାଟିକୁ ଆଜିଟି ଆଜିଥରେ ତାଳି
ଯେ ମାଟିରେ ତୋର କାରତ-କାନ୍ତମଖା ।

ସାମ୍ରାଜ୍ୟ ଧନତାନ୍ତ୍ରିକ ଅପସଂସ୍କୃତି ଯାହା ତୋତେ
ପଙ୍ଗୁ କରିଛି ହେ ମହାମାନବ, ଯାହା ତୋ ଯାତ୍ରା ପଥେ,
ଯେତେ ଅଛି ତାର ଚୂର୍ଣ୍ଣ ଶିଳାଲେଖ
ଗୋଡ଼ାଇ ମାର ତୁ ଶ୍ୱେତ୍-ଉଲ୍ଲୁକ
ହଳ ପ୍ୟାଷ୍ଟର-ଡେଣା
ବାରବାର କରୁ ବିଷ ଦଂଶନ ତୋ ପଞ୍ଜୁଆରର ଫଣା—

ରାଜଧାନୀ ବୁକେ, ସୈନ୍ୟ ଆବାସେ,
ସମ୍ବାଦ ତାର ଖେଳୁ ଦେଶେ ଦେଶେ
ମୁକ୍ତିର ମହା ଲଳାଟଲଗ୍ନ ସମୟର ମୁହାଣରେ
ଗର୍ଜୁଛି ରକ୍ତ ତୋର ପଥ ଚୁହିଁ
ଆଣ ଭଗୀରଥ ଆଣ ତାକୁ ପାଗ୍ଲେଟିରେ !

ଖପୁରିଆ
ତା ୨୫ । ୧୨ । ୭୯
(ବଡ଼ଦିନ)



# ‘ଗାମଚା’ମାନଙ୍କ ସପକ୍ଷରେ

ମାଲସ୍‌ପ୍ରିୟ, ସାଲସ୍‌କାମୀ ଯେତେରେ ଗୁଣ୍ଠୁକାର,
ଅନ୍ତରେ ଯେତେ ତୈଳଗାବା ସାରାଠା ଦୁନଆର !

ଫାଇଦା ପାଇଁ କାଇଦା କରି ଶାସକେ ଥାଅ ଘେରି,
ନୁଆଇଁ ଗ୍ରୀବା ଗଣି ଢବା ସରମ, ଲାଜ ଭୁଲି,

ଅସତ୍ୟର କରନ୍ତେ ପୂଜା ଅସୁନ୍ଦରେ ଆଣି
ସୁନ୍ଦରର ସିଂହାସନେ ବସାଅ ଧନମଣି !

ରାଜାକୁ କୁହ ‘ମଣିମାତମେ ବିଷ୍ଣୁ ଅବତାର’
ରାଣୀକୁ କୁହ ‘ଲକ୍ଷ୍ମୀମାତା’ ରାଜାର ପରିବାର ।

ପୁଅ, ଝିଅ, ନାତୁଣୀ, ନାତି ଅଥବା ରାଜମାତା
ତାଙ୍କ ଶାଢ଼ି, ତାଙ୍କ ଗାଡ଼ି ପାଦର ପୁଣି ଜୁତା,

ତାଙ୍କ ଘୋଡ଼ା, ତାଙ୍କ ଖାଡ଼ା ତାଙ୍କ ଯେତେ ଯାହା
ପବିତ୍ରରୁ ପବିତ୍ର ସେ ହେଲେବି ଘୋଡ଼ାମୁହାଁ ।

“ସୁନ୍ଦରର ତୁଳନା ନାହିଁ ସେପରି ମୁହଁ ଆଉ
ତ୍ରିପୁରେ ନାହିଁ ସେ ଯୌବନ ଜେମା ଯା’ ହେବେ ବୋହୂ,

ପାଇବ ସେତ ସରଗ ଶଶୀ ଭାଗ୍ୟ ଥିଲେ ଜାଣ”
ତମରି ଏଇ ଗୁଣ୍ଠୁନ୍ତି ଓ ତୈଳର ମର୍ଦ୍ଦନ—

ଶାସକ ଆଉ ରାଜାକୁ ନେଇ ପକାଏ ମଡ଼ଖାଟେ
ଚାବୁକ୍ ସିଏ ବାଗେଇ ଧରେ ଅତ୍ୟାଚାରୀ ହାତେ ।

ଧରାକୁ ସେ ତ ମଣେଇ ସରା ତେଲରେ ଜଡ଼ସଡ଼
ନିର୍ଦ୍ଦୋଷକୁ ଧରି ସେ ଆଣେ ଦୋଷୀକୁ ଦିଏ ଛାଡ଼ି ।

ଯୌବନର ପହିଲି ଫୁଲ ତା ପାଖେ ହେଲେ ଲାଗି
ପ୍ରଜାର ଝିଅ ଧନ୍ୟ ହେବ ଲଗାଅ ଭୋଗ ବେଗି ।

ପ୍ରଜାକୁ ତମେ ଶିଖାଅ ଯାଇ ଦଲାଲ, ଭଡ଼ାଟିଆ,
ପରୋକ୍ଷରେ ତମେହିଁ ଜାଲ ରାଜଦ୍ରୋହ ନାହିଁ ।

ବିପ୍ଳବକୁ ତ୍ୱରାନ୍ୱିତ କରଇ ତମ କାମ
ଭଡ଼ାରେ ଯାଅ, ଭଡ଼ାରେ ଆସ 'ଚାମଚା' ତମ ନାମ ।

ଅଦେଖା ମହାଶକ୍ତି ତମେ ସିଂହାସନ ତଳୁ—
ଖସାଅ ମାଟି ତୈଳ ଢାଳି ରାଜାର ପାଦତଳୁ ।

ଦୁନିଆ କରେ ତମକୁ ଘୃଣା ସୁବିଧାବାଦୀ ବୋଲି,
କାରଣ, ତମେ ଅନୈତିକ କୁକୁର ଠାରୁ ବଳି ।

ବେଶ୍ୟା ଠାରୁ ଅଧମ ତମେ ପୁରୁଷ-ବାରାଙ୍ଗନା,
ମନ୍ତ୍ରେ ତବ ଶାସକ ରାଜା ବୁଦ୍ଧି ହୁଏ ବଣା ।

ଅନ୍ୟ କେହି ସେପରି ତାକୁ କରିତ ନାହିଁ ପାରେ
ତମେ ତ କୋଷବଦ୍ଧ ସଦା ତୀକ୍ଷ୍ଣ ତବ ଧାରେ—

ଖତମ୍ ହୁଏ ଅତ୍ୟାଚାରୀ ତେବେ ବି ନାହିଁ ବୁଝେ,
ବୁଝିଲା ବେଳେ ନଥାଅ ତମେ ବୁଦ୍ଧି ତାର ହଜେ ।

ନିଜକୁ ନିଜେ ନିଲାମ ଡାକ ବଜାରେ ନିଜ ଭାଉ—
ବଢ଼ାଅ ପୁଣି କମାଅଁ ତମେ ଚାମଚା ମହାବାହୁ ।

ମହାନ ଦେଶଭକ୍ତ ତମେ    ତମର କୂଟନୀତି
ନବୁଝି ଦେଶ, ନବୁଝି କେହି    ନବୁଝି ପଚ୍ଛେ ଜାତି ।

ବୁଝେ ମୁଁ କବ ରାଜଦ୍ରୋହୀ    ଏ ମୋର ହାଡ଼େ ହାଡ଼େ,
ଚୁମ୍‌ଚୁ ଆହେ ତୈଳଜୀବୀ    ଝଣ୍ଡା ତବ ଉଡ଼େ

ସର୍ବନାଶେ, ବିଶ୍ୱାକାଶେ    ଅତ୍ୟାଚାରୀ ଶିରେ,
ଚୁମ୍‌ଚୁ ତମେ ତକ୍ଷକତ    ସୌଦାଗର ପୁରେ ।

ନିନ୍ଦା ଛଡ଼ା ପ୍ରଶଂସା ତ    ପାଇଲ ନାହିଁ ଦିନେ,
କରେ ମୁଁ କବ ନାନ୍ଦୀପାଠ    ତମର ଅଭିଯାନେ ।

ଯାତ୍ରା ତବ ସଫଳ ହେଉ    ଜୋର୍ ସେ ମାର ଠେଲ,
ତମର କୂଟ ଚୁଟ୍‌କିରେ    ଶାସକ, ସରକାର—

ଅନ୍ଧ ହେଉ, ଅପଥେ ଚାଲୁ    ଆହୁରି ନଅ ଠାଣି
ବିପ୍ଳବର ରୁଦ୍ର-ଝଞ୍ଜ    ଯେ ଯାଏ ନାହିଁ ଜମି

ସେ ଯାଏଁ କର ମାଲିସ୍ ଜୋର୍    ଆହୁରି ଖୋସାମତ,
ପାଦରେ ଦଳୁ ଯଥେଚ୍ଛା ସେ    ଦେଶର ଜନମତ ।

ଧ୍ୱଂସ-ନିଆଁ ଉଠିଲେ ଜଳି    ଚୁମଚୁତଙ୍କ ପାର୍—
ହୁଅରେ ହୁଅ ଗାଏବ୍ ତମେ    ତମକୁ ନମସ୍କାର !

କଲମ ମୋର ସଲାମ କରେ    ତମର ଭୂମିକାକୁ,
ସାବାସ୍ ତମେ ଚୁମ୍‌ଚୁ ଦଳ    ଗୁପ୍ତଘାତି ଡାକୁ !

ଭୁବନେଶ୍ୱର
ତା ୨୮ । ୬ । ୮୦

[illegible]

# ସର୍ବନାଶର କବିତା

ଧରଣୀ ଧରୁଛି ଧୂସରବର୍ଣ୍ଣ, ଯେତେ ତାର ଅଧିବାସୀ
ଗୃହଧାରେ ତାର ଧ୍ୱଂସର ନିଆଁ, ଜାଗିଛି ସର୍ବନାଶୀ ।
ଇତିହାସ ମୋଡ଼େ କର,
ଦେଶେ ଦେଶେ ଶୁଣ ଶୁଣାଯାଏ ଖାଲି, ମାର, ମାର, ମାର; ମାର !

ପବନର ପ୍ରତି ରନ୍ଧ୍ର ବିଦାରି ଅବିରତ ଫାଟେ ଗୋଳା
ଝଡ଼-ଫୁତ୍କାରେ ନିଭିଯାଏ ଦୀପ, ଅଥୟ ବସୁନ୍ଧରା ।
ଫାଶୀକାଠ ଉଠେ ହସି,
ଘୋର୍ ଆକାଶରେ କାନ୍ଦେ ତାରକା ପାହେନା ଦୁଃଖ ନିଶି ।

ମହା ଭୂଗୋଳର ଜାଣିସୁ ଜୀବନେ ଫାସିଷ୍ଟ-ପ୍ରବଣତା
ମଶାଣିର୍ ପେଟେ ମରଣର ଭୋକ, ଖାଦ୍ୟ ମାଗଇ ଚିତା ।
ଜଙ୍ଗୀ ବୋମାରୁ ବିମାନ ଭାଙ୍ଗେ ଆକାଶର ପଞ୍ଜର
ସାଗର ଗରଭେ ଭୀମ-ଆଲୋଡ଼ନ, ପ୍ରଳୟର ହାହାକାର ।

ଇତିହାସ ଚକ ପଛକୁ ଘୂରୁଛି, ହସୁଛି ପ୍ରତିକ୍ରିୟା
ପ୍ରଗତିର ମୁଖ ଆଜି ବିବର୍ଣ୍ଣ, ସତ୍ୟର ମୁହଁ ସିୟାଁ ।
ମୁକ୍ତି ନାଚୁଛି ମରୀଚିକା ସମ, ପାଶେ ଗଲେ ଯାଏ ଦୂରେ
ସ୍ୱାଧୀନତା ବରେ ଅଧୀନତା ନିତି ବନ୍ଧନ ଗଳା ଧରେ ।

କଳା ବଜାରର ଲଙ୍କା ଉହାଡ଼େ ସୂର୍ଯ୍ୟ ଲୁଚୁଏ ମୁହଁ
ଅଭାଗୀ ପୃଥିବୀ ଶୁନ୍ଦ ମାରବେ ତାଳେ ବସି ତାର ଲହୁ ।

ଶଇତାନ ହାତେ ଶାସନ ଚାବୁକ, ତସ୍କର 'ବଣ୍ଟନକ',
ଠକ 'ଜନନେତା', ଦୁର୍ନୀତିଖୋର ଯେତେ ମାତ୍ର ନାୟକ ।

ଦୁର୍ବଳ ଶିରେ ସବଳର ଗୋଇଠି, ଶାସିତେ ଶାସକ ମାରେ,
ସପ୍ତ ମହାରଥୀ ଲମ୍ପଟ ଦଳ, ଅଭିମନ୍ୟୁକୁ ଘେରେ—

ମହାଭାରତର ସେହି ସାତରଥୀ, ସାତୋଟି ନପୁଂସକ
କୁଚକ୍ରୀ ଦାବେ ଦାମ୍ଭ କର୍ଣ୍ଣର ଅବଶତ ରଥଚକ ।

ସାରା ଧରଣୀର ଦେଶେ ଦେଶେ ଜାଗେ ଘୃଣିତ ଦୁଃଶାସନ,
ଆଉ ଥରେ ବସେ ପୁଣି କୁରୁସଭା, କୁଳବଧୂ ରହେ ପଣ ।

କୋଟି ପାଞ୍ଚାଳୀ ଜାନୁ, ନଗ୍ନ ପ୍ରଦର୍ଶନୀର ପାଳି—
ପୁଣି ହୁଏ ସୁରୁ, ଧର୍ମରାଜଟା ଅନ୍ଧବଧିର ପରା !

ପାଣ୍ଡବଙ୍କ ଏଇ ଅନ୍ଧକାରର ଶଇତାନୀ ଉଲ୍ଲାସ
ଯେ କରିବ ଆଜି ଶେଷ ମୁକାବିଲା, ଦୁଃଖ ରାତ୍ରିର ଶେଷ ;

ସେହି ଏକା ଭୀମ ମହାନ ପୁରୁଷ ଦୁର୍ଜୟ ବଳଶାଳୀ
ବାକି ସବୁ ଠକ ଭୂଷଣ୍ଡୀକାକ, ମାରବ ଦେଖଣାହାରୀ ।

ଅଗ୍ରଣୀ ଉଗ୍ର ସେ ଜନଚେତନା ଭୀମ ଯଦି ଥିବ ଜାଗି,
ହୋଇ ସେ ନଥିବ ଯଦି କଣାବକା, କୌରବ-ପଦଲେହୀ ;
ଆତ୍ମମ ହିଂସ୍ର ମଣିଷପଣିଆ ଯଦି ତା ଭିତରେ ଥିବ,
କୋଟି କୁଳବଧୂ ଅବମାନନାର ପ୍ରତିଶୋଧ ଆସି ନେବ ।

ଯଦି ସେ ନଥାଏ, ଅବା, ଯାଇଥାଏ ଭୋଜିଅଠ ପ୍ରଭୁରେ କା'ର,
ବିବେକକୁ ଯଦି ଦେଇଥାଏ ଭଡ଼ା, ଖାଣ୍ଟିକୁ ସେ ଦେଇଜାଲ,—

କରୁଥାଏ ଯେବେ ପାଲଟି 'ଡଲର୍', 'ଲଡର' ହେବାର ମୋହେ,
ଅନନ୍ତକାଳ ଜାଣୁ ଜୀବନ ତାଜାରକ୍ତ ଓ ଲୁହେ—
ଝସୁଛି, ଝସିବ, ତେଣୁ ଆଜ ତାକୁ ଖୋଜିବାକୁ ହେବ ଭୁଲ,
ଅର୍ଜନ ତାକୁ କରିବାକୁ ହେବ, କୁରୁସଭା ଯେବେ ନାଲ—
ଦୁଃଶାସନର ଦୂଷିତ ରକ୍ତେ ଯଦି ହେବା ଦରକାର,
ଶିକ୍ଷିତ, ଶଠ ନୂଆ ଫାସିଷ୍ଟ, ଆଧୁନିକ କୁରୁବଳ—
ମଝିରେ ହୋଇବ ଯଦି ବିପ୍ଳବୀ ଭବମୂର୍ତ୍ତିଟା ଛିଡ଼ା
ଅସହାୟ ନାରୀ ପାଞ୍ଚସେମାର ସେହି ବାନ୍ଧବ ଜୁଡ଼ା ।

ନୁହେଁ ସୁଗନ୍ଧୀ କେଶତୈଳରେ, ନୁହେଁ ତାଜାଫୁଲ ହାରେ,
ଜନଶତ୍ରୁ ଓ ପିଶାଚ ନେତାର ସଦ୍ୟ ଶୋଣିତ ଧାରେ—
ସଜାଡ଼ିବ ଗଣ୍ଠି, ଭାଙ୍ଗିବ ସଭା ଆସିଲେ ମୁକ୍ତିଦାତା,
ସ୍ୱାଧୀନ ହୋଇବ ଅଧୀନ ମାନବ, ଖୋଲିଯିବ ଆଖିପତା ।

ଘରେ ଘରେ ଗଢ଼ି ଉଠିବ ତ ଘାଟି, ଅବରୋଧ ପଥେ ପଥେ,
ମଶାଲେ ମଶାଲେ ପ୍ରତିଶୋଧ ନିଆଁ ସଂଗ୍ରାମେ, ସଂଘାତେ,
ଚରଣେ ଦୋଳିବ ବିପୁଳା ପୃଥ୍ୱୀ, ଊର୍ଦ୍ଧ୍ୱରେ ମହାକାଶ,
ପବନର ପ୍ରତି ରନ୍ଧ୍ରେ ବହିବ ଦଳିତ ଦୀର୍ଘଶ୍ୱାସ—
ହେବ ବେଗବାନ, ଯଦି ଥାଏ ଶ୍ରମ ବିଦ୍ରୋହୀ ଅଭିମାନ,
କୌରବହୀନ ହେବ ଏ ଧରଣୀ, ମରିବ ଦୁଃଶାସନ ।

ଭଡ଼ାଟିଆ ଯେତେ ନାରାୟଣୀ ସେନା ବିପ୍ଳବୀ-ଅଦାଲତେ—
ହୋଇବେ ହାଜର, ଉଡ଼ାରେ ଆସିବା ମଜାଦାର କଥା କେତେ—
ବୁଝିବେ ସେଦିନ ତସ୍କର ଦଳ, ସମ୍ଭାଳ ଆଖି ଲୁହ !
ଆପଣା ଭିତରେ ଅଛୁକନା ଶ୍ରମ ସେଇକଥା ଖୋଜି ଲୁହ !
ଯଦି ଥାଏ ତାକୁ ସାମ୍ନାକୁ ଆଣ, ବଦଳାଇ ନରନାରୀ !
ଚହ୍ଲାଇ ଦିଅ ଜଏ ଲମ୍ପଟ, ଖୁନୀ ଓ ଅତ୍ୟାଚାରୀ !

ଜନାରଣ୍ୟରେ ଯଦି ନାହିଁ ଖ୍ରୀମ
ଖାର ଶୂନ୍ୟ ଏ ଧରାଁ,
ପ୍ରତିଟି ଜାତିର ଜାତୀୟ ଜୀବନ
ଉଦ୍ଧାର ଲଙ୍ଗେ ଭରା,
ତାହେଲେ ପିଶାଚ କରୁ ସହବାସ
ତମ କୁଳବଧୂ ସାଥେ
ଧର୍ଷିତା ହେଉ ସ୍ୱାଧୀନତା-ସତୀ
ଧରଣୀର ପଥେ ପଥେ ।

କ୍ଲୁଞ୍ଜ ମୂଳରେ ମୂଳଟେ ମେଦିନୀ
ନଦେଉ ଦୁର୍ଯ୍ୟୋଧନ,
ଦୁଃଖ କାହିଁକି ? ମାନ ନଅ ତାକୁ
ନପୁଂସକରେ ଶୁଣ !

ଚରଣ୍ରାନ୍ତର ପଥ ନଅ ବାଛି
ମୁଖେ ଧର ବିଷବାଟି
ମାନବ ଶୂନ୍ୟ ହେଉ ଏ ଧରଣୀ
ସର୍ବଂସହା ମାଟି ।

ଆମ୍ଭହନନେ ଜାପୁ ତୃଷତାର
ଅମୃଧି ହୁଅ ପାର,
ଶ୍ମଶାନର ନୂଆ ସଂସ୍କୃତି ଗଢ଼
ଆପଣାକୁ ଦିଅ ସାର !

କଟକ-୧୦
ଏପ୍ରିଲ ପହିଲା
୧୯୮୦



# ବନ୍ୟା—୧୯୮୦

ମହାନଦୀ, ତମେ ଏକ କାଳ, ଏକ, କାଳ ?
ରୁଦ୍ଧ-ରୋଷରେ ସହସା ଉଠିଲ ଫୁଲି,
ବଂଶଧାରା ଗୋ ଭସାଇଲ ନିଜ କୂଳ
ତମ ରୂପ ଦେଖି ମରଣ ଉଠିଲା ଥରି ।

ଅମା-ଅନ୍ଧାର ଦେହରୁ ଶୁଖିଲା ଲହୁ
ପ୍ରକୃତି, ଆଗୋ ଏଡ଼ିକ ଝଷଣା ତମେ !
ମରାଳ-ମାଳମା ଚଳକାର ଜଳବାହୁ—
ଧରି ଉଠାଇଲ ଶୂନ୍ୟେ ଆକାଶେ ପ୍ରେମେ ।

ଏତେ ଜଳ କାହୁଁ ଆଣିଲ ଗୋ ମଉସୁମୀ ?
ଅସୀମ ରୋଦନେ ଆକାଶ ନିଗ୍ରୋ-ଦେହୀ,
ଅବିରତ ବାରି ନେତ୍ର-ତଟରୁ ପାଣି—
ଢାଳି ଦେଇଗଲା ହଠାତ୍ କେଉଁଥି ପାଇଁ ?

ଆମେ ବାସୀମଡ଼ା ପଙ୍ଗୁ ଓଡ଼ିଆ ଜାତି
ଅଧିକ ପଙ୍ଗୁ ହେଲୁ ଅନନ୍ତ କାଳ,
ଯେତେ ବିନିଦ୍ର ହେଲେ ବି ପାହେନା ରାତି
ଆମେ ତ ଓଡ଼ିଆ ବେଦନାରେ ଥରଥର ।

ସହଜେ ତ ଆମେ ଦାରିଦ୍ର୍ୟ ସୀମାତଳେ—
ରକ୍ତ ଚୂନା କରୁ ନିତିଦିନ ନିଜ ମେରୁ,
କୋଠର ଭିତରେ ଆଖି ଦ'ଟି ଆମ ଜଳେ
ଆମ ଦେଶେ ଆମେ ପରବାସୀ ହୋଇ ମରୁ ।

ଆମ ଭୂଆସୁଣୀ ଆନନ-ଅଧର ଫୁଲ
ନିତ୍ତି ଝଡ଼ିଯାଏ ଅନାହାରେ, ଅନଶନେ;
ଲହୁ ଲୁହ ତାଳ ମୂଳିଆ ପାଏନା ମୂଲ
ମରଣ ଖେଳଇ ଲୁଚକାଳି କୋଣେ-କୋଣେ ।

ଅଭାବ, ବେକାରୀ, ଶୋଷଣ, ଦମନ ଯନ୍ତ୍ର
ଗୁ ରୁ ଗରଜନେ ନିତି ଚୂରେ ଆମ ମେରୁ;
କଳାବଜାରର ଉତ୍କଟ ଗଣତନ୍ତ୍ର—
ମଧୁ ଶୁଙ୍ଘି ଶୁଙ୍ଘି ଆମେ ଯେତେବେଳେ ମରୁ ;

ଆମେ ଯେତେବେଳେ ରୁଟି ମାଗି ପାଉ ଲାଠି,
ଆମେ ଯେତେବେଳେ ଗୁଳିମୁହଁରେ ପଡ଼ୁ ଢଳି,
ଘୃତ ମାଗି ପାଉଁ ଯେବେ ମଶାଣିର ମାଟି
ଆମରି ଆଗରେ ଆମ ଚିତା ଉଠେ ଜଳି !

ସେତେବେଳେ ତମେ ଉଦାର ଆକାଶ ଆହେ
ଅନୁଦାର ହେଲ ପ୍ରକୃତି, ଗିରି-ନଦୀ,
ସୃଷ୍ଟି ଭାସିଲା ତମରି ପ୍ରଖର ସୁଏ
କେତେ ଜୀବନର ଭାସିଗଲା ବୁନିଆଦି !

ମହାନଦୀ ଆଗୋ, ତୋର କିଛି ନାହିଁ ଦୋଷ
ଶଯ୍ୟାରେ ତୋର ବାଲିର ପାହାଡ଼ ଶୋଭା,
ଧ୍ୱଂସ - ଧନ୍ୟା - ବନ୍ୟା - ଜଳର ରୋଷ
ସେଇ ସେ ବାଲିର ପାହାଡ଼ ଶିଖରେ ଉଭା—

ହେଲା ବେଳେ ତୋର ଦୁଇକୂଳ ଗଲା ଭାସି
ବନ୍ଧରେ ଥିଲା ଅନେକ ଅମାନ୍ତି-ଫାଟ
ଫେନ-ଗମ୍ଭୀର ଫର୍କିଲ ଜଳରାଶି
କଳ କଳ କଳ ତାର ଚଳ ଚଳ ମେଣ୍ଟ ।

ଜୀବନ-ନଦୀର ବନ୍ଧର ତଳେ ତଳେ
ବହୁତ ଚତୁର ମୂଷିକ ଗର୍ତ୍ତ ଭରା,
ବନ୍ୟା ଜଳର ବର୍ଷିକା ପରେ ପରେ
ମୂଷିକ ପାଇଁ କି ପୌଷ ଆସିଛି ପରା !

କୁମ୍ଭୀର ଆଖି ଲୁହେ ଆଜ ଛଳଛଳ
ଲଭର ସୂର୍ଯ୍ୟ ମନରେ ଆସୁଛି ଉଇଁ,
ଏତେବେଳେ କେହ୍ବ କରନାହିଁ ଗୋଳମାଳ
ଆଲ୍ଲାରେ ଡାକ ନଦୀର ବନ୍ଧେ ଶୁଇଁ ।

ଜଳ-ଗହ୍ବରେ ଗ୍ରାମର ସବୁଜ ଛବି
ନଦେଇ ପଛକେ 'ରିଲିଫ୍' ଭଜନ କର,
ଏଇ କଥା କହେ କୁମ୍ଭକର୍ଣ୍ଣ ଲୋଖି
କଙ୍କାଳ ତକ ଶ୍ମଶାନେ ଧୈର୍ଯ୍ୟ ଧର ।

ଝାଡ଼ ବାଡ଼ ଧରି ଯେତେକ ରହିଛି ଜୀଇ
ଧିକ ଧିକ ଜଳେ ଯା'ର ଜୀବନର ଶିଖା,
ଆସୁଛି ରିଲିଫ୍ ନୂଆ ନାଲି ଖାତା ନେଇ
"ଓଁ, ଶୁଭ ଲଭ" ତା ଉପରେ ଅଛି ଲେଖା ।

ନେଏ ଚୂଡ଼ା, ଗୁଡ଼, ଅଟା ଓ ଶୁଖିଲ ଖା !
ହେଲିକେପ୍‌ଟରୁ ମୃତ୍ୟୁ-ରିଲିଫ୍ ପଡ଼େ
ହେମାନୁ ମଶାଣି ସୁନ୍ଦର ଦିଶେ ଆହା !
ଆକାଶ ଅଧୀର ଯାନ୍ତ୍ରିକ-ଡେଣା ମାଡ଼େ !

ଶବର ଲଲାଟେ ଗ୍ରାମାନନ୍ଦୀର ଟିକା
ଶ୍ମଶାନେ ଫୁଟିବ ଭୋଅଟର ଶତଦଳ,
ସାରା ଓଡ଼ିଶାରେ *ମରଣର ମୀରବତା
ତା'ରି ତଳେ ତଳେ ଗୁଳିବ ଶାସନକଳ ।

ତା ୨ । ୧୦ । ୮୦

# ଇରାନ

ଇତିହାସ ଆଜ ରକ୍ତସ୍ନାତ ।
ତାର ଦୁରନ୍ତ ଅଶ୍ୱଯୂଥ
ଆଉ ତାର ରଥ ଚକ
ବୁଲୁଛି ପଛକୁ ।

ଏ ପଶ୍ଚାଦପସରଣ
କିଏ ତାର କାରଣ ?
କୁହ ତେହେରାନ୍
ଆଉ କୁହ ପେଟ୍ରୋଲଗର୍ଭା
ଉନ୍ମତ୍ତ ଇରାନ୍ !

ଆତତାୟୀ ପ୍ରତିକ୍ରିୟା-ଚେଲା,
ହେ ମାତାଲ୍, ହେ ଉନ୍ମତ୍ତ ଆଲ୍ଲା !
କମ୍ଭୂତ ଏ ଉତ୍ତରଣ
ମୋନାର୍କରୁ ମୁଲ୍ଲା !

ହେ ଇରାନ୍, ଏହିକି 'ବିପ୍ଳବ' ତବ
ଏହି କି 'ପ୍ରଗତି' ?
ଯା'କୁ ଦେଖି ହସି ଉଠେ
ବୃଦ୍ଧ ଆଉ କ୍ଷତାକ୍ତ ଶତାବ୍ଦୀ ।

ହେ ଉନ୍ମତ୍ତ, ଏକି ପରିହାସ ?
ନରମେଧ ଯଜ୍ଞଧୂମ ଗ୍ରାସିଛି ଆକାଶ ।

କା ଉଦ୍ଦେଶ୍ୟେ ଏହି ବଳିଦାନ ?
ଆଉ ଏ କୁର୍ବାନ୍ ?
ପାଶବିକ-ଅନ୍ଧକାରେ
ଏହା ଏକ ମସ୍ତ ଶଇତାନୀ
ପ୍ରେତର ପେଷଣ-ଯନ୍ତ୍ର
ସୁହୃଦର ମୃତ୍ୟୁର ଶମନୀ ।

ହେ ନେତା ଖୋମେନି
ଖୋଦାଙ୍କର ଖୋଦ୍ ପି: ଏ:
କେଉଁପରି ଫରମାନ ଇଏ ?
ଏକି ଇସ୍ଲାମ ?
ଲଜ୍ଜିତ କୋର୍‌ଆନ୍ ।

ଏ ନୁହେଁ 'ବିପ୍ଳବ' ମୋଟେ
ଏ ଆତ୍ମହନନ ;
ବହୁ ଅଙ୍କ କଷି କଷି
ଭୟାନକ ଅନ୍ଧକାରୁ 'ଶୂନ'
କରୁଛ ଅର୍ଜନ,
ନୂଆ "ଫେରଉନ" । (୧)

ହେ ଇରାନ !
ହେ ଇରାକ୍ !
ଅଶୋଧିତ ପେଟ୍ରୋଲ୍ ଭଣ୍ଡାର,
ତଥାପି ଶୋଧନ ତମେ
ହେଲନାହିଁ !
ଏ ଦୁଃଖ ଆଲ୍ଲାର
ଆଉ 'କାର୍‌ବାଲ୍'ର । (୨)

(୧) ଫେରଉନ୍--ମୁସଲମାନ ଧର୍ମର କଂସ (୨) କାରବାଲା--ମୁସଲମାନ ଧର୍ମର କୁରୁକ୍ଷେତ୍ର ।

କ୍ଷାନ୍ତ ହୁଅ ଜାହାଁପନା
ହେ ଖୋମେନୀ, ବେଗମ ଇରାନ୍ !

ଇତିହାସେ ଜଣାଅ ସମ୍ମାନ,
ଇତିହାସ ସର୍ବଦା ମହାନ୍ ।

କରନାହିଁ ତାର ଗତିରୋଧ,
ନ ହେଲେ ସେ ନେବ ପ୍ରତିଶୋଧ,

ଏଇ ଦେଖ କାନ୍ଧ ଉଠେ ଦ୍ରାକ୍ଷାର ଗାଥିକା !
ଦେଖି ଦେଖି ତମ ବର୍ଷୀୟସିକା
ଇଦ୍‌ର ପହିଲ ଚୂନ୍ଦ
ନରୁଦ୍ଦିଷ୍ଟ ହୁଏ......
କ୍ଷୋଭେ ଦୁଃଖେ ଆଉ
ଆଖି ଲୁହେ ।

ପୋଛ ଥରେ ତାର ଲୁହ ବାର
ହେ ସୁନ୍ଦରୀ 'ଇରାନୀ କଶୋରୀ',
ଆଉ ଥରେ ପାଠକର
ଆଲ୍ଲା ଫର୍‌ମାନ
ଅପରୂପା ରୂପସୀ ଗୋ
ବେଗମ ତେହେରାନ୍ !



# କେ ନ ଥିଲେ ତମେ ଅଛ

ଶିକ୍ଷକ ନାହାନ୍ତି ସ୍କୁଲେ, ଅଫିସରେ ନାହାନ୍ତି କିରାଣି
ହାଜିରା ପକାଇ ବାବୁ ଯାଇଛନ୍ତି ବୁଲି ଗୁଣମଣୀ ।

ଫାଇଲର ନାଲିଫିତା ଫିଟି ନାହିଁ ହେଲା କେତେ ଦିନ
ଚଉକିର କୋଣ ଖାଲି, ବସି ବସି ଢୁଲାଏ ପିଅନ ।

ହାକିମ ଅଛନ୍ତି ଘରେ ଚାଲିଅଛି ଶାସନର କଳ
ଦରଦାମ ବଢ଼େ ହୁ ହୁ, ମିଳେ ନାହିଁ ଜିନିଷ ପତର ।

ଖଡ଼ି ଖଡ଼ି ହାଡ଼ି ମାଳ ଚଲେ ଜଲେ ଜୀବନର ଦୀପ
ନିଭି ଯାଉ ଯାଉ ଶିଖା ଝଂଜାଘାତେ ହୁଏ ଦପ ଦପ ।

ଘୁସ୍‌ଖୋର ହାକିମଠୁ, ସୁଧଖୋର ମହାଜନ ଯାଏଁ
'ସଙ୍ଗଠିତ ଗୁଣ୍ଡା ଦଳ' ପୁଲିସର ଚାହିଁଦେଲେ ମୁହେଁ—

ମନେ ପଡ଼େ କୋଟି ମୃତ୍ୟୁ, ବିଭୀଷିକା ନାଚଯାଏ ଚାଲି
'ଗଣତନ୍ତ୍ର' ନାମେ ଯେତେ ଯନ୍ତ୍ରଣାର ସବୁ ଚୋରାବାଲି ।

ଚତ୍ୱରର ମୂଷିକଦଳ ଅବିରତ ଖୋଳେ ତା' ବିବର
କ୍ଷେତେ ନାଚେ ମରୀଚିକା ଭୟଙ୍କର ଜଟା ତା' ପିଙ୍ଗଳ ।

ଶିକ୍ଷିତ ବେକାର ବୁଲେ "ଦିଅ ପ୍ରଭୁ ଖଣ୍ଡେ ତ ଚାକିରୀ
ଅକାଳରେ, ଅନାହାରେ ଯଉବନ ମୋର ଯାଏ ଚାଲି" ।

ହୁମା'ଙ୍କର ବୃନ୍ଦାବନେ ବଂଶୀଧାରୀ ଥିଲେ ବି ନାହାନ୍ତି
ମଣିଷକୁ ଶୋଷେ ଏଠି ବାର ବାର ଭ୍ରଷ୍ଟ-ରାଜମନ୍ତ୍ରୀ ।

ସବୁଥାଇ କିଛି ନାହିଁ ଅଛି ଖାଲି ରୋଗ ଶୋକ ଭୋକ
“ହୁଅରେ ଦାୟିତ୍ୱବାନ, ହେ ଜନତା ବଞ୍ଚିବାକୁ ଶିଖ,”

ଲକ୍ଷ କୋଟି ଟନ୍ ଟନ୍ ବ୍ୟବହାର ସଫେଦ କାଗଜ
ହୋଇଅଛି ଏ ଭାରତେ ଯେଉଁ ଦିନୁ ଆସିଲା ସ୍ୱରାଜ ।

ଜମାନା ବଦଳି ଗଲା, ବଦଳିଲେ ସିନା ମନ୍ତ୍ରୀ ଦଳ,
ପୂର୍ବ ପରି ରହିଅଛି ସେ କଂଗ୍ରେସୀ ଶାସନର କଳ ।

ନୂଆ ବୋତଲରେ ପଶି ଅତୀତର ପୁରାତନ ମଦ
ଭାରତୀୟ କଙ୍କାଳରେ ଶୁଣାଉଛି ‘ଗଣତନ୍ତ୍ର’ ବେଦ ॥

କାଗଜ ଉପରେ ଭାଇ ଲାଭ ନାହିଁ, ଶୁଣରେ ପୀଡ଼ିତ
କାଗଜର ‘ମା’ ଯିଏ ତାକୁ ତମେ ସବୁ ଚିହ୍ନିଛ ତ ?

ନାମଟି ବାଉଁଶ ତା’ର, ବମ୍ବୁ ପୁଣି ସେ ଅଟଣ୍ଠା ମୂଳ
ତାର ସିଧା କାରବାରେ ଆଖି ଖୋଲେ ଶ୍ମଶାନରୁ ଶୂଳୀ ।

ଗୁଡ଼ଯାଏ ଭଙ୍ଗନଶା ଆଲ୍ଲା ନାମ ଆସଇ ସ୍ମୃତିକୁ
ସମସ୍ୟାର ସମାଧାନ ଜନ୍ମ ନଏ ବାଉଁଶ ବିବେକୁ
ବାଉଁଶର ଅଟଣ୍ଠା ବୋଧନ
ଶୁଣାଇବ କେଉଁ ଦିନ କୁହ କୁହ ଜନ ସାଧାରଣ ?

କା’ରେ ନ କହିଲି ନାହିଁ, ମୋତେ କୁହ ନାହିଁ କିଛି ଭୟ,
ଏ ଦେଶର ପୂର୍ବାଶାରେ ଆଣିପାର ତୁମେ ସୂର୍ଯ୍ୟୋଦୟ ॥



# ହଜାର ପ୍ରଣତି

[ ବାଲେଶ୍ୱର ଜିଲ୍ଲା ବିଦେଇପୁର ଗ୍ରାମର ହାଡ଼ିବନ୍ଧୁ ନାୟକ ଜଣେ ଦାଦନ ଶ୍ରମିକ—ଘଟଣାର ୧୫ ଦିନ ପୂର୍ବରୁ କଲିକତାରୁ କାମ କରି କରି ଫେରି ଆସିଥିଲେ । ଅତ୍ୟନ୍ତ ଦୀନ ଅବସ୍ଥାରେ ଚିକିତ୍ସିତ ହୋଇ ନପାରି ନିଜ ଗାଁ ଠାରୁ ୧୦ ମାଇଲ ଦୂର ବାସୁଦେବପୁର ବଜାରର ଗୋଟିଏ ଦୋକାନ ବାରଣ୍ଡାରେ ତାଙ୍କର ମୃତ୍ୟୁ ହୋଇଥିବାର ସମ୍ବାଦ ଦୈନିକ "ସମାଜ"ର ତା ୯ । ୧ । ୭୮ ସଂସ୍କରଣରୁ ପଢ଼ିଲି ପରେ କବିତାଟିର ରଚନା । କବିତାଟି ଏ ଯାଏଁ ଅପ୍ରକାଶିତ ଥିଲା ।]

ଉପରେ ତ ଥିଲା ଉଦାର ଆକାଶ
ନିମ୍ନରେ ବସୁମତୀ,
ବିନା ମୂଲେ ନିଜ ମେହନତ ବିକ
ବିଦାୟ ନେଇଲ ହେ ସାଥୀ !

ଦୁନିଆ ପାଇଲା ନାହିଁ ତା ଖବର
ହେ ନୀରବ ବଳିଦାନୀ,
ଆହେ ଆଧୁନିକ ଯୁଗ କ୍ରୀତଦାସ
ତମ ପାଇଁ ନାହିଁ ବାଣୀ ।

ନାହିଁ ଫୁଲ ତମ ବିଦାୟ ଲଗନେ
ଲେଖନୀ ମୋ ଉଠେ ଥରି,
ଆଖି ଆଗରେ ବସେ ଲୁହର ଦରିଆ
କେ ତମ ହତ୍ୟାକାରୀ ?

ତମେ ଏକା ଜାଣ, କହ୍ଲନ କା'ରେ
ଅଲୋଡ଼ା ଦାଦନ କୁଲି,
ଏଇ ଧରଣୀର ସାମାଜିକତାଠୁ
ଭାଇ, ନମ୍ନ'ମ ଘର !

ତମ ପରି କେତେ ଶ୍ରମିକ ଗଲେଣି
ଜୀବନର ପରପାରେ
ଆହୁରି ବି ଯିବେ, ଅଭାବ ବେକାରି
କ୍ଷୁରଧାର ହତିଆରେ ।

ହୃଦୟ-ଜବାରୁ ପାଖୁଡ଼ା ଗୋଟିଏ ଛିନ୍ନ କରିବା ଛଡ଼ା
ଅଜଣା ଶିଳ୍ପୀ ! ନିଃସ୍ୱ କବି ମୁଁ ନୀରବରେ ହୋଇ ଛିଡ଼ା,

ବିନ୍ଦୁଏ ଖାଲି ଲୋତକର କଣା ତାଳିଦିଏ ତମ ପାଇଁ
ବ୍ୟଥାର କୁସୁମ ଏବି ମୋ ଅର୍ଘ୍ୟ, ଆଉ କି ପାରିବି ଦେଇ ?

ତମରି ବିଦାୟ ବେଳେ,
ଥରେ ଅଧେ ନୁହେଁ, ହଜାର ପ୍ରଣତି ତାଳେ ତମ ବେଦି ମୂଳେ ।

ତା ୯ । ୧ । ୭୮



# ଓଲଟା କବିତା

ବିରାଟ ଭୂଭାଗ ଭାରତବର୍ଷ ଭଡ଼ା ଆଜ ଗୃଧ୍ରାରେ
ଚରଣେ ଶରଣ ପଶାପଶି ଲୀଳା ଅବାଧେ ନିର୍ବିଘ୍ନରେ
ପବିତ୍ର ମାନବ ଦେହ ବିକାବିକ, ବାଦୁଡ଼ିର ରାଜମାନ୍ତି
ନୁହେଁ ପଶୁ, ନୁହେଁ ପକ୍ଷୀ ଶାବକ, ଏହିପରି ଦଳେ ଜାତି
ଭାରତର ମସ୍‌ନଦେ—
ବସି ଆରାମରେ, ଜାତିଟାକୁ ନେଇ ମରଣର ସରହଦେ
କରିଛନ୍ତି ଠିଆ, ଗୃଧ୍ରଦଳେ ନାଆଁ ଜଳଯାଏ ସବୁକଛି,
ସତ୍ୟର ବଳିଦାନ ଉତ୍ସବ ସରିନାହିଁ ବାକି ଅଛି ।

ନଇରାଜ୍ୟର ସିନ୍ଧୁ ଗରଜେ ଜନାରଣ୍ୟର ତଳେ
ତା'ର ଗର୍ଜନେ ସମାଜ ଜୀବନ ହାଡ଼ ପଞ୍ଜର ଥରେ ।

ଗୃଧ୍ରଦଳେ ବିଷ-ଧୂମ-କୁଣ୍ଡଳ ଧୂମକେତୁ ଧୂମଶିଖା,
କ୍ଷୋଭ, ବିକ୍ଷୋଭ, ଘାତ-ସଂଘାତ ନଭ ଆସେ ପଥରେଖା ।

ପ୍ରତିମାନବିକ-ମୂଲ୍ୟବୋଧର ହାତେ ଆଜ ବିଷବାଟି
ରାଜ୍ୟଲୋଭର ସଂସ୍କୃତି ଗଢ଼େ ଆତ୍ମକେନ୍ଦ୍ରୀ ଘାଟି ।

ମଣିଷ ମଣିଷ ଭିତରେ ଦୂରତା ଦେଖି ପାଏ ନାହିଁ ଆଖି
ଭୀତି, ଭୀରୁତାରେ ଚେତନା ପଙ୍ଗୁ, ନାହିଁ ସଖା ନାହିଁ ସଖୀ ।

ଜନାରଣ୍ୟରୁ ଉଠେ କ୍ରନ୍ଦନ, ଅସାମ୍ୟ ବାଲିଚଢ଼ି
ଜୀବନ-ନଦୀରେ କାଏମୀ ସ୍ୱାର୍ଥ ପାଣିର ଶୋଷଣ ତୋଡ଼ି !

ପ୍ରଭୁଭକ୍ତର ସଂସ୍କୃତି ତଳେ ସାଲସ୍ ଗାଲଚ୍ଛୁ ପାଉ
ଅବକ୍ଷୟପୂର ପ୍ରବଣତା ଧୀରେ ଡାକେ ତାର ହାତ ଠାଉ ।

ଆସ ନାରୀ, ଆସ ବୃଦ୍ଧ, ଯୁଆନ୍, କବି-ଲେଖକର ଦଳ
ଆସ କଳାକାର, ଆସ ବିଜ୍ଞାନୀ, ମୋ ପୀଠରେ ହୁଅ ଠୁଳ !

ଆସ ଯେତେ ଅଛ ଚରମ ସତୀ ନାରୀ, ମାନ୍ତବାନ ଯେତେ ଲୋକ,
ତମ ସତୀତ୍ୱ, ନୈତିକତାକୁ ମିଉଜିୟମରେ ରଖ ।

ସେ ସବୁ ତ ଆଜ ମଧ୍ୟଯୁଗୀୟ ଯେତେ ଅଭିଧାନ ଭାଷା
ରଚିବାକୁ ହେବ ଆଧୁନିକତାର ରେଶମ ପୋକର ଖୋସା ।

ହେ ପୃଥିବୀ, ତମେ ଯାଇଛ ଓଲଟି, ଓଲଟ ତମର ଗତି
ଅଳସୁଆ ଯେତେ ଭୋଗେ ସୁଖଶିରୀ, କର୍ମୀ ଖଟଇ ବେଠି ।

କୃଷକର ଚଷା ଉପାସରେ ଶୁଏ, ଶ୍ରମିକର "ମୂଲ" ଗୁଳି
ସତ୍ୟ ପିଠିରେ ଶାସନ-ଚାବୁକ୍, ମାଡ ପାଏ ନିତି ଶୂଳି ।

ଓଲଟା ନିୟମ, ଓଲଟା ପୀରତି, ଓଲଟା ତ ସଂସ୍କୃତି
ନର୍ଦ୍ଦମା ଏଠି 'ନର୍ମଦା' ନଦୀ, କୁଳଟା ବୋଲାଏ 'ସତୀ' ।

ରାତିସାରା ଏଠି ପାଣି ବୋହି ବୋହି ମୁଗୁରର ପଛ ମେଲା
କାହାର କଥା ତ କାହାକୁ ଶୁଭେନା, ସଭିଏଁ ମସ୍ତ କାଲା ।

ବଢ଼ିଆ ଭାବରେ ତମେ ଓଲଟିଛ ପୃଥିବୀ, ଚମତ୍କାର !
ରହସ୍ୟବାଦୀ ଓଲଟବୃକ୍ଷ ତମକୁ ନମସ୍କାର ।

ତମ 'ପୋଜସନ୍' ଦେଖି ହସ ମାଡ଼େ ପେଟ ଫାଟେ ହସିହସି
ତମେ ଆଧୁନିକ କବି ପରି ଦଣ୍ଡି, ଦେଖେ ମୁଁ ମାରବେ ବସି ।

ଅପେରା ପାର୍ଟିର ମ୍ୟାନେଜର ପରି ତମର ଲମ୍ବାବାଳ
ନକଲି ରାଜାର ହାତେ ଯେଉଁପରି ଟିଣର ସେ ତଲୁଆର,

ଐତିହାସିକ ହିଞ୍ଜଡ଼ା ପରି ସାଜିଛ ରାଜାର ରାଣୀ
ପଛପଟେ ତମ ଦୋଳାଚଞ୍ଚଳ ନକଲି ବାଳର ବେଣୀ ।

ନକଲ ତମର ପୀନପୟୋଧର, ନକଲ ତମର ଭୂତ୍ରୁ,
ଉଠି ଆସି ତମେ ଭଙ୍ଗା ଚଉକ, ନକଲ ରାଜାର କୋଳୁ,

ଦଶଦ୍ୱାର ଦୂରେ ଆଡ଼ରୁଷା ଦେଇ ସାଜିଅଛ ବରହ୍ୱଣୀ,
ନିମିଷକେ ପୁଣି ମାନଭଞ୍ଜନ, ଫୁଲଶେଯେ ହୁଅ ରାଣୀ !

ଆଖି ପିଛୁଳାକେ ଗର୍ଭଧାରଣ, ତା'ପରେ ଜନମ ସାଜ
ତଣ୍ଡୁଳ ରସ୍କ ପଙ୍କ ଥଲଥଲ ତମର ପୀରନ୍ତ ସେଜ ।

ବସି ଦେଖି ଦେଖି ରାତିତ ପାହେନା; ଧନ୍ୟ ଭଣ୍ଡଦଳ,
ରାତି ପାହିଗଲେ ସବୁ ସିଧା ହେବ, ଓପରଠା ହେବ ତଳ ।

ସେହି ସକାଳକୁ ମୋର ଅପେକ୍ଷା ଲାଗୁ ଯେତେ ରାତି, ଯୁଗ,
ଆସୁ ଯେତେ ଅଛି ଓଲଟା ବାଗୁର, ଅଛି ଯେତେ ଦୁର୍ଯୋଗ ।

ଯେତେ ନିଶାଚର ପିଶାଚ, ଦସ୍ୟୁ ଠୁଳ ହେବେ ସେତେ ଭଲ
ଓଲଟ ଡଙ୍ଗା ବୁଡ଼ିବା ପାଇଁକି ପାଖେଇ ଆସିବ ବେଳ ।

ଓଲଟ-ବିଷରେ ଓଲଟ ପୃଥ୍ୱୀ ଓଲଟ ଖାବରେ ମତ୍ର,
ଓଲଟ ଖାବରେ ସବୁ ଶେଷ ହେଉ, ଓଲଟ ବିଦ୍ରୋହର—

ଅଗ୍ନି ଜଳୁଛି ତମର ଓଲଟ ବୁନିଆଦ ତଳେ ଜୋର୍,
ଯେଦିନ ସେ ନିଆଁ ଶିଖାପ୍ଲୁତ ହେବ, ସେହିଦିନ ହେବ ଭୋର୍ ।

ତା ୧ । ୨ । ୮୧

# ବିରୋଧାଭାସ

ପ୍ରତାରକ ଆଉ ପ୍ରତାରିତ
ଉଭୟେ ଯେଉଁଠି ଦୁର୍ନୀତିଖୋର,
ପ୍ରତାରଣା ଆଉ ଦୁର୍ନୀତି
ସେଠି ଏକମାତ୍ର "ନୀତି" ।

ଶାସକ ଆଉ ଶାସିତ
ଉଭୟେ ଯେଉଁଠି ସ୍ୱେଚ୍ଛାଚାରୀ,
ସ୍ୱେଚ୍ଛାଚାରହିଁ ସେଠି
"ଗଣତନ୍ତ୍ର" ।

ପୁଲିସ ଆଉ ଅପରାଧୀ
ଉଭୟେ ଯେଉଁଠି ଶଇତାନ,
ଶଇତାନୀ ଆଉ ନୈରାଜ୍ୟ ହିଁ
ସେଠି ଏକମାତ୍ର "ଆଇନ" ।

ବିପ୍ଳବୀ ଓ ପ୍ରତି-ବିପ୍ଳବୀ
ଉଭୟେ ଯେଉଁଠି ଭଣ୍ଡ,
ଭଣ୍ଡାମିଟା ହିଁ ସେଠି
ଏକମାତ୍ର "ବିପ୍ଳବ" ।

ନାରୀ ଓ ପୁରୁଷ,
ପ୍ରେମିକ ଓ ପ୍ରେମିକା
ଉଭୟେ ଯେଉଁଠି
ବିକୃତ-ମସ୍ତିଷ୍କ,
ଐତିହାସିକ-ହିଞ୍ଜଡ଼ାମାନେହିଁ ସେଠି
ଦେଶ, ଜାତି, ସମାଜ ଓ ସଂସ୍କୃତିର "କର୍ଣ୍ଣଧାର" ।
ପୁଷ୍ପମାଳ୍ୟ ଆଉ ଅପମାନ
ଉଭୟେ ଯେଉଁଠି ମଳିନ,
ସ୍ୱୟଂ-ସମ୍ବର୍ଦ୍ଧନାହିଁ
ସେଠି ଏକମାତ୍ର 'ସମ୍ବର୍ଦ୍ଧନା' ।

କବି ଓ କବିତା ଯେଉଁଠି ଅବୋଧ,
ଅବୋଧତାହିଁ ସେଠି
ଏକମାତ୍ର "ଫିଲସଫି" ।

ଅହିଂସା ଯେଉଁଠି ହିଂସ୍ର,
ଭଗବାନ ଯେଉଁଠି ଅନ୍ଧ,
ଯୀଶୁ ଯେଉଁଠି ଆତତାୟୀ,
ଆଲ୍ଲା ଯେଉଁଠି ହତବାକ୍
ବେଦମନ୍ତ୍ର ଯେଉଁଠି ସ୍ତବ୍ଧ,
କୋର୍‌ଆନ୍‌ର 'ସୁରା' ଯେଉଁଠି ମୂକ,
'ବାଇବେଲ୍' ଯେଉଁଠି ରାଇଫେଲ୍ ଧାରୀ,
ଗୀତା ଯେଉଁଠି କ୍ଷତବିକ୍ଷତ,
ସେଠି
ସମାଜର ସିଂହାସନରେ
ତାର ବିପରୀତ ଶକ୍ତିର ଅଭିଷେକ—ଅନିବାର୍ଯ୍ୟ ।

ଏପରି ଏକ ଓଲଟ-ପୃଥିବୀ
ତାର ପଙ୍ଗୁତା,
ତାର ଅଧୋଗତି,
ତାର ଓଲଟା ନିୟମ ଓ ଅପ-ସଂସ୍କୃତିକୁ
ଯେଉଁମାନେ ସହି ନ ପାରୁଛ—ଆତ୍ମହତ୍ୟା କର ।

ଏ ବ୍ୟବସ୍ଥା ବିରୁଦ୍ଧରେ
ଏକକ ପ୍ରତିବାଦ—ବୋକାମି ।

ଯା ବିରୁଦ୍ଧରେ ଏକକ ପ୍ରତିରୋଧ—ମୃତ୍ୟୁ ।

ଏ ସବୁର ଏକମାତ୍ର ପ୍ରତିକାର—ମହାଧ୍ୱଂସ ।

ସେ ମହାଧ୍ୱଂସର ମହାନ ବିଧାଣୀ
ମଣିଷ ନୁହେଁ—ମହାନ ପ୍ରକୃତି ।

ତେଣୁ
ହତାଶାକୁ "ଆଶା"ର ଗରିମାରେ
ବିଭୂଷିତ କର
ଦୁଃସହ ପ୍ରତୀକ୍ଷା ବ୍ୟତିରେକେ
ଅନ୍ୟ କୌଣସି ଉପାୟ ଅଛି କି ?

ତା ୧୮ । ୩ । ୮୧

●